# ଜଳ ମର୍ମର

ରଚନା

**ଶ୍ରୀ ଶ୍ରୀବତ୍ସ ନାୟକ**

ସ୍ୱତ୍ୱ ଓ ପ୍ରଯୋଜନା

**ଶ୍ରୀମତୀ ଚନ୍ଦ୍ରଲେଖା ଦେବୀ**

ଢେଙ୍କାନାଳ

ପ୍ରକାଶନ

**ବନଶ୍ରୀ ପ୍ରକାଶନୀ**

ବ୍ରହ୍ମପୁର

ପ୍ରଥମ ସଂସ୍କରଣ

ଏକ ହଜାର

୧୯୬୪

ମୁଦ୍ରଣ

**ଓଡ଼ିଶା ଆର୍ଟ ପ୍ରେସ**

ବ୍ରହ୍ମପୁର

ମୂଲ୍ୟ

ଦୁଇ ଟଙ୍କା ମାତ୍ର

~~ଦୁଇ ଟଙ୍କା ପଞ୍ଚତ୍ରିଶ ପଇସା~~

## ॥ ପରଂପରା ॥

ଜନମ ଅବଧି ହମ୍ ରୂପ ନେହାରଣୁ
ନୟନ ନା ତିରପିତ ଭେଲ,
ଲାଖ ଲାଖ ଯୁଗ ହିୟେ ହିୟା ରାଖନୁ
ତବୁ ହିୟା ଜୁଡ଼ାୟ ନା ଗେଲ ।

—ବିଦ୍ୟାପତି—

ଭାବ ପେତେ ଚାୟ ରୂପେର ମାଝାରେ ଅଂଗ
ରୂପ ପେତେ ଚାୟ ଭାବେର ମାଝାରେ ଛାଡ଼ା ।
ଅସୀମ ସେ ଚାହେ ସୀମାର ନିବଡ଼ ସଂଗ,
ସୀମା ଚାୟ ହତେ ଅସୀମେର ମାଝେ ହାରା ।

—ରବୀନ୍ଦ୍ରନାଥ—

ଯାହାକିଛି ମୋର ଅଶ୍ରୁ ସବୁ ଦେବ
ତମରେ,
ନିଖିଳ ହୃଦୟ ଢାଳବ ଏ କର-
କମଳେ ।

-ମାନସିଂହ-

ଗଂଧ ଯେସନେ ମଳୟ ସମୀରେ ମିଶେ
ତଟିନୀ ଯେସନେ ସାଗରକୁ ଧାଏ ବନ୍ଧୁ,
ଯେସନେ ଜୋଛନା ଶ୍ୟାମ ପ୍ରାଂତରେ ମିଶେ
ତମରି ପରଶେ ମିଶିଯିବ ମୁଁ ଗୋ ସନ୍ଧୁ !

-ବୈକୁଣ୍ଠନାଥ-

# କୈଫିୟତ୍

ଜଳମର୍ମରର ବହୁପୂର୍ବରୁ ପ୍ରକାଶିତ ହେବାର କଥା । ବସ୍ତୁତଃ ୧୯୫୬ ମସିହାରେ ଏହା ପ୍ରକାଶିତ ହେଉଛି ବୋଲି ବିଜ୍ଞାପିତ ହୋଇସାରିଥିଲା ଏବଂ ପରେ ପରେ ଜଣେ ବଶିଷ୍ଟ ସାହିତ୍ୟିକ ଏହାର ଅଗ୍ରଲେଖ ମଧ୍ୟ ଲେଖି ସାରିଥିଲେ ।

ଏତେ କଥା ପରେ ଯେ ଏହା ପ୍ରକାଶିତ ହେଲାନାହିଁ, ତା'ର କାରଣ, ଏହି ପ୍ରେମକବିତା ଗୁଡ଼ିକୁ ସଙ୍କଳନ କରି ପୁସ୍ତକାକାରରେ ପାଠକ ମାନଙ୍କୁ ଦେବାପାଇଁ ମୋ'ର ମାନସିକଦ୍ୱନ୍ଦ୍ୱ । ମଝିରେ ରାଜନୀତି କ୍ଷେତ୍ରରେ ମୋ'ର ପ୍ରବେଶ—ମତେ ଭାବପ୍ରବଣ ଯୌବନର ଏହି ରଚନା ଗୁଡ଼ିକୁ ପ୍ରକାଶ ପାଇଁ ଦେବାରେ ଯଥେଷ୍ଟ ଅନିଚ୍ଛୁକ କରିଛି । ନିଜର ଯେଉଁ ବାହାର ରୂପଟି ଲୋକେ ଦେଖି ଆସିଛନ୍ତି, ତା'ର ତଳେ ସଂଗୋପନରେ ବହିଥିବା ଅନ୍ତଃସଲିଳା ଫଲ୍‌ଗୁର ସନ୍ଦର୍ଶନରେ ସେମାନଙ୍କ ମନରେ କି ଭାବବିକାର ଜାତ ହେବ, ସେଇ ଭୟ ଏତେଦିନ ପର୍ଯ୍ୟନ୍ତ 'ଜଳମର୍ମର'ର ମର୍ମରକୁ ଜନଶ୍ରୁତି-ପଥକୁ ଆଣିବାକୁ ଦେଇ ନଥିଲା । ଏବେ ମଧ୍ୟ ବନ୍ଧୁ ବର୍ଗଙ୍କ ଅନୁଯୋଗ, ଅଭିଯୋଗ ଓ ଆଗ୍ରହାତିଶଯ୍ୟରେ ଏ କବିତା ଗୁଡିକ ମୁଁ ପ୍ରକାଶ ପାଇଁ ଦେଉଥିଲେହେଁ, ସମ୍ପୂର୍ଣ୍ଣ ଲଜ୍ଜାମୁକ୍ତ ନୁହେଁ ।

ବାସ୍ତବ 'ଜଳମର୍ମର'ର ଏହା ଏକ ସଚୟନ ମାତ୍ର । ୧୯୪୧ ରୁ ୧୯୫୦ ମର୍ଯ୍ୟାଦା—ଏହି ଦଶ ବର୍ଷ ଭିତରେ ରଚିତ ବହୁ କବିତା ମଧ୍ୟରୁ ଏଥିରେ ମାତ୍ର ୨୫ଟି କବିତା ସନ୍ନିବିଷ୍ଟ ହୋଇଛି । ୧୯୫୦ ପରର ଲେଖା ଏଥିରେ ନାହିଁ ।

'ପ୍ରେମ' ଛଡ଼ା ଜୀବନର ଅନ୍ୟ ବିଭବ ସମୂହର ରଚନାବଳୀ ପ୍ରଥମେ ପ୍ରେସକୁ ଦେବା ସକାଶେ ମୋ'ର ଇଚ୍ଛା ଥିଲା । ନାନା-କାରଣରୁ ତାହା ସମ୍ଭବ ହୋଇନାହିଁ । ଗୋଟିଏ କଥାରେ ମାନିବାକୁ ଗଲେ ଏହା ମୋ'ଜୀବନର ଏକ ମଧୁର ସ୍ୱପ୍ନମୟ ପର୍ଯ୍ୟାୟର ଉତ୍କଳ ମନୋବାଞ୍ଛାମ । ତେଣୁ 'ଯୌବନର ମୁଁ'କୁ ଦେଖି କେହି ଯେପରି 'ଆଜିର ମୁଁ'କୁ ଖୋଜିବାକୁ ପ୍ରୟାସ ନକରନ୍ତୁ — ସେଥିପାଇଁ ବିନମ୍ର ମିନତି ଜଣାଉଛି ।

ଜଳମର୍ମର ପ୍ରକାଶରେ ଅହେତୁକ ବିଳମ୍ବ ହେବାରେ ସାହିତ୍ୟ କ୍ଷେତ୍ରରେ କେହି କେହି ବନ୍ଧୁ 'ବନ' ଓ 'ମନ' ମଧ୍ୟରେ ମର୍ମର ଶୁଣିବାକୁ ପାଇଛନ୍ତି । ସୁତରାଂ ଜଳମର୍ମରର ପୂର୍ବନାମ ବଦଳାଇ ଦେବାକୁ ମୁଁ ଭାବୁଥିଲି । କେତେକ ବନ୍ଧୁ ଏହାର ତୀବ୍ର ବିରୋଧ କରିବାରୁ ଏହା ତା'ର ସ୍ୱକୀୟ ଓ ସୁପରିଚିତ ନାମରେ ହିଁ ପ୍ରକାଶ ପାଇଲା ।

ଭାରତୀୟ ସାହିତ୍ୟ ଏକାଡେମୀର ସଦସ୍ୟ ଓ ଓଡ଼ିଶାର ପ୍ରଗତିଶୀଳ-ସାହିତ୍ୟର ଅଗ୍ରଜ ଶ୍ରୀଯୁକ୍ତ କାଳନ୍ଦୀ ଚରଣ ପାଣିଗ୍ରାହୀ ଜଳମର୍ମରର ଆଭାସ ଦେଇ ଥିବାରୁ ମୁଁ କୃତଜ୍ଞ ।

ବ୍ରହ୍ମପୁର
୨୧।୯।୧୯୬୪
ଭାଦ୍ର ପୂର୍ଣ୍ଣିମା

## ଆଭାସ

ଭାରତୀୟ ସାହିତ୍ୟ ଏକାଡେମୀର ସଦସ୍ୟ
ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ
**ଶ୍ରୀଯୁକ୍ତ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ**
ଲେଖନୀରୁ

କବି ମାନେ ପ୍ରେମିକ, ଭାବୁକ ଓ ସାଧକ । ସମ୍ପୂର୍ଣ୍ଣ କବିତାରେ ଏହି ତିନୋଟି ଲକ୍ଷଣ ଦେଖାଯାଏ । ଭଲ ପାଇବାରେ ଯଦି ଭାବର ସ୍ପର୍ଶ ନଥାଏ, ତେବେ ତାହା ଅନ୍ତଃସାରଶୂନ୍ୟ ହୋଇପଡ଼େ । ଆଉ ଯେ ପ୍ରେମ ଓ ଚିନ୍ତା ଅସମର୍ଥ ଲୋକ ପକ୍ଷରେ ଲାଭ କରିବା ମଧ୍ୟ ସମ୍ଭବପର ନୁହେ । ଧ୍ରୁବ ଅନ୍ତରରେ ତାହାର ଆଲୋକ ପ୍ରଜ୍ୱଳିତ । ମାତ୍ର ତାହାକୁ ସାଧନାର ଇନ୍ଧନ ଯୋଗାଇ ନ ପାରିଲେ ଅକାଳରେ ତାହା ନିର୍ବାପିତ ହୁଏ । "ଜଳମର୍ମର" କବିତାସମଷ୍ଟିରେ ସେଇ ପ୍ରସାଦ ଗୁଣ ଗୁଡ଼ିକ ଅନୁଧେୟ । ଏଥିରେ ଭାଷାର ରୂପ ଅଛି, ଭାବାବେଗ ଦ୍ୱାରା ମଧ୍ୟ ତାହା ଯେପରି ରସାଣିତ, ଛନ୍ଦ ମାଧୁର୍ଯ୍ୟରେ ସେଇପରି ରଞ୍ଜିତ । କବି ଶ୍ରୀ ଶ୍ରୀବତ୍ସ ନାୟକଙ୍କର ଦଶବର୍ଷ ପୂର୍ବର ଏଇ ରଚନାବଳୀ ଓଡ଼ିଆ ସାହିତ୍ୟର ରୋମାଣ୍ଟିକ୍ ଯୁଗର ଏକ ଅଳଭ୍ୟ ସ୍ୱାକ୍ଷର ବହନ କରୁଛି, ଓ ତାଙ୍କର ପରବର୍ତ୍ତୀ ପଦକ୍ଷେପ ପାଇଁ ଉତ୍କଣ୍ଠା ଜଗାଇଛି । ଜଳ ପରି ଏହା ଶୀତଳ ଓ କୋମଳ, ପୁଣି ତାହାର ମର୍ମର ପରି ମୃଦୁ ଓ ମଧୁର ।

**କାଳନ୍ଦୀ ଚରଣ ପାଣିଗ୍ରାହୀ**
**କଟକ, ୫।୭।୧୯୬୪**

# ସୂଚୀ




କବିତା ଗୁଡ଼ିକରୁ ଅଧିକାଂଶ 'ଝଂକାର', 'ଶଂଖ' ତଥା 'ବୀଣା' ପ୍ରଭୃତି ଓଡ଼ିଆର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

## ॥ କଥନିକା ॥

ଯେଉଁ ଧୂଳିରେ ଜାଗଲ କଣିକ
ଧରଣୀ,
ଗଂଧ-ବଧୂର କଲ ଏ ନଳିନ-
ସରଣୀ,
ଆକାଶେ ବତାସେ ଭରିଦେଲ ଜୟ-
ଜୟୁଗୋ,
ସେ ଭୂମିର କାନ୍ଧ କାହିଁ କେବେ ଚରା-
ଜନ୍ମ ଗୋ ?
ଯେ ଶୋଭା-ସୁଗନ୍ଧ ଲେଖିଲ ମୁଁ ଏତେ
କବିତା,
ଜାଣେଣି ଲୁଚିବଣି ସେ ଭୂଚରଧର
ସବିତା,
ବାପ ଲୁଚିବାଣି ମଉଳି ଯିବଣି
କମଳ !
ମୋ' ଆଖିରେ ତମେ ତଥାପି ପୁଣ୍ୟ-
ଅମଳ !
ସବୁ ଯିବ ଯିବା ମନ ନା ମହିଦ ସମ୍ର ରେ,
ତାହାର ଅମର ବାର୍ତ୍ତା
ତେଣୁ ମୁଁ କାନେ କାନେ ଗଲି କହିଲେ !!

—ରଚୟିତା

॥ ଉତ୍ସର୍ଗ ॥

ଯେଉଁମାନଙ୍କ ସ୍ନେହ-ସହାନୁଭୂତିରେ

ଅଂତର

ପରିପୂର୍ଣ୍ଣ ହୋଇଛି...

—ରଚୟିତା

# ॥ ମୁହୂର୍ତ୍ତ ॥

ଆଗୋ ସଖି ! ଆଜି କବିତା ଲେଖିବି
　　　　　　　　ତବ ନାମେ...
ଦେଖ ଗୋ ବର୍ଷା ଝରଝର ପଡ଼େ
　　　　　　　　ଏଇ ଯାମେ;
ନୀରବ ନିଥର ନିଦ୍ରିତ ଏଇ
　　　　　　　　ନିଶୀଥ ଲାଗେନା ଉଜ୍ଜ୍ୱଳ,
ଆଗୋ ଏ ସଜନି ! ବର୍ଷା କି ଆଣେ
　　　　　　　　ତମ ଆଖିଟାରୁଁ କଜ୍ଜଳ ?

ଏଇଟିକେ ହେଲା ଗଲା ସଖୀ ତବ
                    କାମସାର ଘରେ ଚଂଚଳ,
ଏ ଶୀତ ପବନେ ଖେଳୁଥିବ ପଥେ
                    ଉଡ଼ୁଥିବ ତନୁ ଅଂଚଳ !
ଅଂତରେ ତା'ର ଜାଗୁଥିବ ଶତ
                    ଚିରନ୍ତ-ଆଶାର ଉନ୍ମାଦ,
ଆଗୋ ! ଭାବୁଥିବ ମିଏ ଆମକଥା···
ଆଗୋ ! ଭାବୁଥିବ ତା'ର ସଜଡ଼ା ଶେଯରେ
                    ଲାଗିଥିବ କିବା ପରମାଦ !

ପଉବନ ଆଜି ଭାଂଗେ ଲହଡ଼
                    ଉର୍ମି ଉଠଇ ଉଚ୍ଛଳ,
ବନ୍ୟା ଆସଇ ତନୁମନ ଛୁଇ
                    କଳକଳ ଖାଲି ଛଳଛଳ !···
          ଦୁଷ୍ଟ ! ତମେ କି ନାହିଁଜାଣ ?
          ଏସନ ବର୍ଷା ! ବାଣବାଣ !!
ଏସନ ରାତି ! ଫୁଲଶେଯ ଧାରେ
                    ତନ୍ଦ୍ରା ଲେଉଟେ କିବା ପରଶନ,
ଆଜି··ବେଳୁଁ ବେଳ ଗଡ଼େ ମୁହୂର୍ତ୍ତ, ସଖି !
                    କର ଗୋ ପୀୟୂଷ ବରଷଣ !

ଫୁଲବଗିଚ୍ଚାରୁ ଗୋଲାପକୁସୁମ
ତୋଳିଥିଲେଁ ପଗ ସଂଧ୍ୟାରେ,
ଜୁଡ଼ାଟିରେ ସଖି ଖୋସିଦେବ, ଆସ···
ମହକ ଉଠିବ ଅଂଧାରେ !
ଆହେଗୋ···ଘନରାତିର ମୋ'ର ଧ୍ରୁବତାରା !
ଆଜ···ଉଜଳାଅ ମୋର ଗୃହକାର,
ହେଉ···ପ୍ରତିପଦପାତେ ପବନ ତଳ
ପ୍ରିତ ନିଃଶ୍ୱାସେ ସମୀରଣ,
ଆଜି···ଶ୍ରାବଣେ ଫୁଟୁଗୋ ଶତଦଳ
ଆଜି···ଘରତଳ ହେଉ ମଧୁବଣ !

ଫୁଲରେ ଫଗୁଣ ନବ-ବସନ୍ତ
ଅମ୍ବରରେ ଧୂଳି ମାରମାର
ଆଗୋ···ପୁରାତନ ସେଇ କୃଷ୍ଣରେ ମାତିର
ବୃନ୍ଦାବନେମା ଫିଟକାର !
ଶତ···ଶରତ ସଂଜ ସମୀରଣେ
ପୁଣି···ଭରା-ଭାଦରର ବରଷଣେ
କଏ···ନାଚନାଚ ଗାଏ ଅଭିନଂଦନ ତବ ଯୌବନ-ମହ୍ଲାର,
ଆଗୋ···ବେଳଆଉଁ ଢାଳ ଚୁଂବନ ଯାଥ !
କୃପାକର ମୋରେ କୃପାକର !!

ବଣାକବଣ, ବୁଦ୍ ବୁଦ ବତ
ଊଭେଇ ଯାଉଛି ନିତନିତି,
ଆହେ।··କବାଲର ବୃଥାଦର୍ଶନେ···
ବୃଥା ତର୍କେ ବତାଇ ଗତିଗତି ?
ଯା' କଚ୍ଛ ସବୁଜ ସୁନ୍ଦର···
ତା'ରେ··ତୋଳଧର ବେକୁଁ ତୋଳଧର,
ବୈଶାଖୀ ବାଆ ଚୁମ୍ବବା ଆଗୁଁ
ଚୁମ୍ବନ ତାରେ ଦିଅ ପାଥି !
ବଣାଳବଣ, ବୁଦ୍ ବୁଦ ବତ
ଉଭେଇ ଯାଉଛି ଦିବାଗତି !!

ମୋଥିର ସାଗର ମନ୍ଥନ କରି
ଅତଳେ ବୁଡ଼ିଚ ଯେତେ ଥର,
ଜୀବ-ସୃଷ୍ଟିର ତତ୍ତ୍ୱ ନପାଇ
ନିରାଶେ ଫେରିଚ ଅନ୍ତର !
ଯଦି··ପରକାଳ କାହିଁ ଥାଏ କିଛି
ମରଣର ପାରେ ଦେଖାଅଛି
ଧ୍ରୁବ ତେଜ ଯା'ର ଅଧ୍ରୁବ ମତ
ନଷ୍ଟ ତାହାର ଦୁଇକୂଳ,
ସୁନ୍ଦର ଏଇ ଧରଣୀରେ ସଖା,
ଫୁଲତୋଳ ଖାଲି ଫୁଲତୋଳ !

ଶୁଣୁନାହଁ ସଖି ଚମ୍ପ ଗର୍ଜୁଛି
ଘର୍ଘର ଘୋର ଘର୍ଘର,
ଜୀବନରଥ ଏ ଅଶ୍ୱଚରଣେ
ପୃଥିବୀ କଂପେ ଥରଥର !!
ତେଣୁ କହେ ରାଣି ! ଜାଗଜାଗ,
ସବୁ ଭୁଲ ମାଗ ଅନୁରାଗ !
ପୀରତି କୁସୁମୁଁ ମଧୁକର ସମ
ଯେତେ ପାର ମଧୁ ଶୋଷିନିଅ,
ଘୋର ଘର୍ଘରେ ଦୂରେ ଚଞ୍ଚଳ କାଳଚକ୍ର···
ରସବିଅ···ଖାଲି ରସପିଅ !!!

—O✱O—

କଟକ
ତା ୨-୩-୧୯୪୭

## ॥ ମେଘ-ମଙ୍ଗଳ ॥

ନୀଳ ମେଘଘୋଟିଲେ କରତଳେ ଗୁଞ୍ଜ
ଡାକିଲୁ ଆଜି କେ' ପ୍ରଣୟୀ
'ଅଶ୍ରୁ-ସଜଳ ଘଧ୍ର-ଭ୍ରୂଲତା
ଅନ୍ତମାନେ ଫୁଲି ଉଠଇ
"ଆସ କେ ରହିକ ଚୁମ୍ବନ ଦାନେ
ତୃପ୍ତ କରିବ ବର୍ଷା ଗୁମାନେ'
ସମବେଦନାର ଛଳପାଇ ବାଳା
ପୁଣି ପୁଣି ଉଠେ କାନ୍ଦି,
ଅଶ୍ରୁ-ସଜଳା ଭଦ୍ର କବରୀ
କେ' ଦେବରେ ଆଜି ବାନ୍ଧି ?

ତପନ ବିହୀନ ଧ୍ୱାନ୍ତ-ଗଗନେ
କା'ର ଆଜି ଅଭିଯାନ,
କାହାର ପରଶେ ଜାଗି ଉଠିଲା ମୋ
ଯୌବନ ସମ୍ମାନ ?
ତରୁଣୀ କେ' ଦେଲା କବରୀ ମିହାଇ
ମୁଗ୍ଧ ମୁଁ କବି ରହିଲିରେ ଚାହିଁ
ବ୍ୟର୍ଥ ଘଟନେ ନୟନେ ନୟନେ
ମିଳିଲା ଧ୍ୱନିଲା ସଘନେ,
ବହ୍ନି ଦିବସର ଜାଗ୍ରତ ରୂପ
ଦେଖାଦେଲା ଆଜି ଲଗନେ !

ବାଦଲଭରା ଏ ଭାଦର ଆକାଶ
ଧୂଳିଫୁଲ ଉଠେ ଆଜରେ,
ଗୁରୁଗୁରୁ ନାଦେ ହୃଦୟର ଉଠେ
ମେଘ-ଡଂବରୁ ବାଜରେ !

ଆକାଶେ ବତାସେ ଏ କ ହିଲ୍ଲୋଳ
ବେଳୁଁ ବେଳ ଫୁଲେ ଜଳକଲ୍ଲୋଳ
ନର୍ଝର ଝର କାନନେ କାନନେ
ବର୍ଷା ପଡ଼ଇ ନଇଁରେ,
ଶୀତଳ ଆକାଶେ ଶିଥିଳ ବାଦଲ
ଡାକଦଏ ରହି ରହି ରେ !

ଚୂହିଁ ଦେଖ ଧୀରେ ମେଘ ମନ୍ଦରେ
ଫିଟି ପଡ଼ିଲା କା' କବରୀ,
ବଣଫୁଲ ନେଖାମି ମଥାରେ ଗଭାରେ
ଫେରିଲେ ଶବର ଶବରୀ ।

ପରବାସେ ଆଜ ହୃଣୟୀ କାହାର
ବ୍ୟଥିତେ ପ୍ରିୟା ତା' କରେ ହାହାକାର
ଝରିପଡ଼େ ବ୍ୟଥା ଅଶ୍ରୁ-ସଜଳ
ଅମଳ କମଳ ଲପନେ,
କଳାମେଘ କୋଳେ କାନ୍ଦ କେ ମରେ···
ଚପଳା ଉଠିଛି ଗଗନେ !

ଘୁରୁଘୁରୁ ମେଘ ଗରଜେ ଗରଜେ
ଉଲ୍ଲସି ମାତେ ପବନ,
ବର୍ଷାର ଧାର ଧୋଇଦିଏ ଧୀରେ
ମୂର୍ଚ୍ଛା ଧରଣୀ ଲପନ !
ଝ'ର ଗଛରେ ଗଛରେ ଝରୁଛି ସୁମନ
ମାପ ପୁଷ୍ପରେ କିବା ପ୍ରୟୋଜନ ?
ଉଚ୍ଛଳ ବାସେ ଏ ତରୁଣ ପ୍ରାଣ
ନଚି ଉଠେ ହାଇହାଇରେ,
ଆକାଶ ଆଜ କେ ପାଗଳ ପ୍ରଣୟୀ
ମେଘେମେଘେ ଗଲା ଛୁଇରେ ?

ଆଜ ଭଦ୍ରର ନୂପୁର ବାଜଇ
ଶୈଳ ଶିଖର କାନନେ,
ଉଲ୍ଲାସେ ପ୍ରିୟା— ପାଦେଶ ନର୍ତ୍ତିତ
କେକା-କୁହରିତ ଭବନେ ।
ଦଶେଦିଶେ ଭରା ମିଳନର ରାସ
ଧରା ରୋମାଞ୍ଚେ ଫୁଟିଉଠେ ଘାସ
ମାଡ଼ ଖୋଜ ଦେଖ କାତର କପୋତ
କପୋତୀ ଗଣ୍ଡ ପରଶେ,
ଆଜ ନିର୍ଜନେ ତରୁଣ ହାୟୁରେ
ମୁଁ ଏକା ବସିଲି ବିରସେ ।

ଏ ଆକାଶ ତଳେ ଲଘୁ ବର୍ଷାରେ
କାନ୍ଦିବ କାହାଲାଗି,
ଲଘୁ ମନ୍ଦିରା ଆକଣ୍ଠ ପାନେ
ନ ହେବରେ ଅନୁରାଗୀ ?
ଜୀବନ କି ତେବେ ବ୍ୟର୍ଥ ସ୍ୱପନ···
ଏତେ ଯେ ଆଦର, ଏତେ ଅଭିମାନ
ପ୍ରିୟ-ପରଶନେ ମୁଗ୍ଧ ନୟନେ
ଅଶ୍ରୁ ଉଠିବା ଝଲକି,
ଏ ଯେବେ ମିଥ୍ୟା··· ସ୍ରଷ୍ଟା ! ପଚୁରେଁ—
ସତ୍ୟ ସ୍ୱା' ଠାରୁ ଭଲକି ?

ଜୀବନେ ଜୀବନେ ଅଜାଣତେ ହିନେ
ସ୍ୱପନ ଜାଗଇ ବକ୍ଷେ,
ଏକର ସକାଶେ ଆରେକର ପ୍ରାଣ
ସଜଳ ଭରଇ ଚକ୍ଷେ ।···
ଜ୍ୟୋତ୍ସ୍ନା ପଚୁରେ ଗୋଲାପେ ଅନାଇ
କାନ୍ ପାତି ଦୂରେ ରାତି ରହେଛନ୍ତି
'ବିଶାଳ ଧରାରେ ଏ ଦୁଇଟି ପ୍ରାଣ
ମିଳିବାକି ଅପମାନ ?'
ଅଭିସାର ରାତି କାନପାତି ଶୁଣେ
ଦୁଇଟି ଜୀବର ଗାନ ।···

ଦୂର ଅଗଣର　　　　　ସ୍ମୃତି ସୁନ୍ଦର
　　ଆଜ ଝଲମିଛି ନୟନେ,
ଭାଦ୍ରବ ଏଇ　　　　　　ବରହ-ଚକିତ
　　ଗୁରୁ-ବର୍ଷଣ-ଲଗନେ !
　ସେଦିନ ବର୍ଷା ଶୁଭ-ଆଗମନ
　ହେନାର ଗନ୍ଧେ ପୂରଉଠେ ମନ
ଢ଼ଳା ପବନର　　　　　ଶୀତ-ଚୁମ୍ବନେ
　　ଥରେ ଥର ଉଠେ ହୃଦୟରେ,
କଦମ୍ବ-ରେଣୁ-　　　　ମୁଗ୍ଧ କାନନେ
　　କେ' ଡାକଲ 'ପ୍ରିୟା, ପ୍ରିୟା'ରେ !

ସେଦିନ ସଘନେ　　　　　ଆସିଲ ବର୍ଷା
　　ବିଦ୍ୟୁତ୍ ଥିଲ ଗଗନେ,
କୁଞ୍ଜ ମୋହର　　　　　ଚମକଲ କା'ର
　　ଗୁରୁ-ଚକ୍‌କଣ ଚରଣେ ?
　କା'ର ପାଖେ ଏଇ ଖାରୁ ଅନ୍ତର
　ମାଗି ନେଲ ମାଗି ଚିର-ସୁନ୍ଦର—
ଗୁରୁ ଉଠେ କା'ର　　　　ଓଷ୍ଠ ଅଧୀର
　　ଆପେ ଆପେ ଗଲ ମୁଦରେ,
ଶୀକର-ସିକ୍ତ　　　　　ପାଗଳ ସମୀର
　　କମ୍ପି ଉଠିଲ ଅଧୀରେ !

ଅସ୍ତ୍ର ଜମିଲ ନୟନର ଖରେ
ବଦନ ନଇଁଲ ସରମେ,
କେଉଁ ମିଳନର ବଂଶୀ ବାଜିଲ
ଯୁଗ୍ମ-ମରମେ ମରମେ !
ଲୋମେ ଲୋମେ କା'ର ସ୍ନିଗ୍ଧ-ପରଶ
ମାଡ଼ିଥିଲ ସମ କଲା ହରଷ ?
ବର୍ଷଣ ଘନ ଚଳେ ଏ ପବନ
ତା'ର ପାଶେ ଦେଲ ଘଁସିରେ,
ଆକାଶେ ଆକାଶେ ବଂଧୁ, କେ' ଦେଲ
ମୀନ-ଅଂଜନ ଲେପିରେ ?

ଆଜ ବରଷାର ସନ୍ଧ୍ୟା ଲଗନେ
ଥରଥର ଝରେ ଗଗନ,
ଉର୍ଦ୍ଧେ ଜଳଦ ଚିତ୍ରକାର ମନର
ଚେତନବନ୍ଦି କା'ରେ ଭୁବନ ?
ମୁଗ୍ଧ ଆକାଶେ କେତେ ଉତ୍ସବ
କିବା ଲାଭ କରି ଏକା ଅନୁଭବ
ବୁକୁତଳେ ଆସେ ବ୍ୟର୍ଥ-ବେଦନା
ପ୍ରିୟା ନାହିଁ ପାଶେ ନାହିଁରେ,
ସ୍ନିଗ୍ଧ-ଜଳଦ ଚଳେ ଏ ପବନ
କହଉଠେ ହାଇ ହାଇରେ !

—o✱o—

କଟକ
ତା ୨୭-୮-୧୯୪୩

## ॥ ମାନରଖ ॥

ଫଗୁଣର ମୁଗ୍ଧ ଅଭିଯାନେ
ଅଭିସାର ରଚିଲନି ସଖି,
ପ୍ରଣୟୀ ମୋ' ତପ୍ତ ବୁକୁରେ
ଆପଣାର ମୁଗ୍ଧ ମୁଖ ରଖି !

ଭ୍ରୂକେ ତବ ଖେଳିଲାନି କଁପା
ମିଳନର ମଧୁର ଧ୍ୟାନ,
ତରଳ ତ ନାହିଁ ହେଲା କାହିଁ
ସଖି, ତବ ଆପ୍ଲୁତ ଈକ୍ଷଣ !

ଓଷ୍ଠ ତବ କଂପିଲାନି କଁପା
ଚୁଂବନର ମୁଗ୍ଧ ଦାବଦାହେ,
କୁଂଜବନ ଥରିଲାନି ତବ
କଂକଣର ନିକ୍ୱଣ ପ୍ରବାହେ !

ଜ୍ୟୋତ୍ସ୍ନାରାତି···ମଳୟ ମଧୁର···
ବକୁଳର ତୀବ୍ର ମଧୁବାସ,
ଘନକୁଞ୍ଜ···ପିକ-କୁହୁରେତ···
ଦିଏନିକି ହୃଦୟେ ପରାଗ ?

ମୁକ୍ତ ତବ ମୁଗ୍ଧ-ବାତାୟନେ
ପବନ ଯେ ବନ୍ଧେ ଥରଥର,
ମନ୍ଥର ମନ୍ମଥ-ମଦେ···,
ଟୁଟିକିଗୋ ନାହିଁ ତାର ନାର ?

କି ପ୍ରକଣ୍ଠେ ବନ୍ଧୁ ଆସେ ଫିର
ଚକୋରର ବିକଳ କାନ୍ଦଣା,
ଏବେଳେ କି ନାହିଁ ଜାଗେ ତବ
ମର୍ମତଳେ ମିଳନ ବେଦନା ?

ତରୁଣୀର ବ୍ୟଥାତୁର ନେତ୍ରୁ
ଉଚ୍ଛୁଳନ୍ତ ଯୌବନ ପଡ଼େ ଢଳି,
ସେ ବେଳରେ ହତାଦର କିଆଁ
ପଦେ କିଆଁ ଦେଇଅଛ ଦଳି ?

ଯେ ବାହୁ ଆଶ୍ଳେଷ ପାଶ-
ଲାଳସେ ମୁଁ ମୂର୍ଚ୍ଛା କବ ଆଜ
ଆତୁର ଆକୁଳ ପ୍ରାଣ
ବ୍ୟଥାଭରେ ଯାଏ ମୋର ଭାଜ

ବୁକେ ତବ ବାଜେନାକି ସହି
ସେ ବେଦନା ଆକୁଳ ଆରତି,
ଯୁଗଯୁଗ ବୁଭୁକ୍ଷା ଆଶା—
ହୃଦୟ ମୋର ହେଲା ଯା' ଭରତି !

ଅନ୍ତରର ଆବରଣ ଭେଦ
ଯେ ନିଃଶ୍ୱାସ କଁପି ଆସେଝର
ତମର୍ଶ ପରଶ୍ନ ଆଶେ;
ସଜନି କ ଜାଣନାହିଁ ପାର ?
...

ଅମ୍ର କୁଂଜେ ଉଠେ ଡାକେ ପକ୍ଷୀ
ଉଡ଼ିବୁଲେ ଜ୍ୟୋସ୍ନାର ଚଂଚଳ,
ହେ ସଜନି, ଆହେ ପ୍ରିୟତମା,
ସଖି, ଆସ କରେନଏଁ କୋଳ !
ବକୁଳର ଆକୁଳ ଏ ବାସେ
ଫଗୁଣ ଯା'ରଚନ୍ତି ଆହ୍ୱାନ,
ପ୍ରାକୃତର ମାନରଖ ସଖି,
ବ୍ୟର୍ଥ ନୋହୁ ତା'ର ଅଭିଯାନ !...

—୦*×*୦—

ବିଦ୍ୟାଧରପୁର,
ଢେଙ୍କାନାଳ
ତା ୮-୨-୫୧

## ॥ ସ୍ୱୀକାରୋକ୍ତି ॥

ବୁକୁଭରା ଏତେ ସ୍ନେହ ନେଇ ପୁଣି କିଂପା ଏ ଅଭିମାନ,
କେବେ କି ତମର ମୋ'ର ପୀରତିର ହୋଇପାରେ ଅବସାନ ?
ନିଖିଳ ବିଶ୍ୱେ ତମେ ସିନା ମମ
ନିଜଜନ, ସଖୀ, ରାଣୀ, ପ୍ରିୟତମ;
ଅଶ୍ରୁ-ଆରତି ଅନ୍ତର-ଦୀପେ ଜାଗିଉଠେ ଅବିରାମ···
ତମଲାଗି ସଖି, ଆଜ ଏ ଲଗ୍ନେ ପୋଛିଦିଅ ଅଭିମାନ !

ନିଖିଳ ପ୍ରାଣର ପ୍ରଣୟିନୀ ମୋର···ପ୍ରଣୟ—ଅର୍ଘ୍ୟଦେଇ,
ତବ ପୂଜାପୀଠେ ସୁନ୍ଦରି ଏ ମୋ' ଅନ୍ତର ଦେଲି ଫେଇ ।
କୁଟୀଳ ନିନ୍ଦା ଶୁଣିଲି ବା କିସ
ଦାନ ଶିଳ୍ପୀର ଶୁଭନାମେ ବିଷ
ବୋଲନ୍ତୁ ଯା' କହନ୍ତୁ ଚପୁଡ଼ି ରକ୍ତ କାମନା ଅଗ୍ନି-ଦେହୀ;
ଭୁଲିଯାଅ ତା'ରେ ଅନୁରୋଧ ମମ ଭୁଲିଯାଅ ପ୍ରିୟସହି !

ଅପରାଧ ସେ ଗୋ; ଅଜ୍ଞାତେ କା'ର କାଉଁରୀପରଶ ପାଇ,
ମୁଗ୍‌ଧ-ବହଗ ସର ମୁଁ ଛୁଟିଲି··· ଅସୀମ ମୁକ୍ତ-ପାଯ୍ରୀ !
ଲଜ୍ଜାରେ ମମ ଥରଇ କଣ୍ଠ···
ଟିଇଛୁ ଗୋ ଯେଉଁ ବନ୍ଧ ଆକଣ୍ଠ,
କହିବ କେସନେ ଅପରାଧ ତେତ୍ତେ ତମଆଗେ ପ୍ରିୟସହି,
କଣ୍ଠେ ତମର ନ ଦେବକ ହାତ ସରମେ ମୂଣ୍ଡ ନଇଁ ?

ଶିଳ୍ପୀ ଜଗତେ, ଶୁଣ ତେବେ ରାଣି, ଲେଖାଇଲି ଯେବେ ନାମ,
ମନ୍ଦରଛନ୍ଦେ ବୁକୁତଳେ କଏ ଗାଇଲା ପାଗଳଗାନ !!
ନୂଆ ଯଉବନ ପ୍ରଣୟ ବନ୍ଧେ
ଭୁଲି ସଂସାର ମୋହନ ଛନ୍ଦେ
ପଥିକ ହେଲିଗୋ ଭ୍ରଷ୍ଟ-ଲଗନେ ଗୋଲାପ-ଉଜୁଡ଼ା ପଥେ,
ସୁରଭି-ଶୀତଳ ଚୈତ୍ରବାତର ମଳୟ ଜୈତ୍ର-ରଥେ !

ଯୁବତୀ ଗୃହିଁଲେ ଛନ୍ଦେ ଅନେକ ମନ୍ଦିର ଚକ୍ଷେ ଭରି,
ଜୋଛ୍‌ନା ଡାକିଲା ଗୋଲାପ କୁଞ୍ଜେ ଥରି ଥରି ଥରି ଥରି !
ନବୀନ ଶିଳ୍ପୀ ମୁଗ୍‌ଧ ମୁଁ ରାଣି
ଅନ୍ତର ଭରି ପ୍ରକାଶିଲି ବାଣୀ
ବରିନେଲି ମୋଦେ ଜୀବନେ କରିବା ଲକ୍ଷରୂପର ଗାନ,
ଫୁଲୁଁ ଫୁଲେ ଉଡ଼ି ମଧୁକର ସମ ଧରିବା ମଞ୍ଜୁ-ତାନ !

ଶିଳ୍ପୀ ଜୀବନେ ବହ୍ନିଶିଖାର କେତେ ରୁଦ୍ର ଏ ପରିହାସ,
ରୂପବତୀ ଯେତେ ଯୁବତୀ ଓଷ୍ଠେ ନରେଖିବ ନଷ୍ଟ ହାସ ?
ସେ ସକଳ କଥା ଦୂରେ ପରିହରି
ଅଶ୍ରୁ-ନୟନେ କ୍ଷମା ନଏ ବରି
ଶିଳ୍ପୀ ହେବାରେ ଏ ଜୀବନେ ଗଣି, କଳଙ୍କ ହେଲା ପାପରାସ,
ଆଜ ତେଣୁ ପ୍ରିୟେ କରନା କରନା ନଷ୍ଠୁର ପରିହାସ !

ଶିଳ୍ପୀ ହେବାର କାମନା କଲାଗୋ ଅନ୍ଧ ବିବେକ ମୋର,
ଦେହେ ମନେମୋର ତୀବ୍ରଦହନ ଆଣିଲା ବାସନା ଘୋର ।
ଲକ୍ଷ କୋଟି ଏ ଦୁନିଆର ଫୁଲ
ଉପଭୋଗ ଲାଗି ହେଲାଗୋ ଆକୁଳ
ଜୀବନ-ମଧୁପ; ହେଲ ଉମଳାଗି ନିର୍ମମ ଅନ୍ତଦୋର,
ରୂପ-ତୃଷ୍ଣାର ଦହନ କଲାଗୋ ଅନ୍ଧ ବିବେକ ମୋର !

ଲକ୍ଷ ଶିଳ୍ପୀକ ତଳେ ଉଡ଼ିଲି ମୁଁ ମଧୁମକ୍ଷିକା ପରି,
ବକ୍ଷ ନିଗାଡ଼ି କୋଟି ରୂପସୀର ପୀରତି-ପାତ୍ର ଭରି ।
ପ୍ରୀତି-ମଂଜୁଳ ଖିଲିକାଳରାତେ
ସ୍ୱପ୍ନ-ଅଳସ-ଅବଶ-ଗାତେ
ପଶି ରାଇଜର ଶୟନଶଯ୍ୟାରେ ପକ୍ଷଯୁବକ ସରି,
ଲକ୍ଷ ଶିଳ୍ପୀକ ତଳେ ବୁଲିଛି ମୁଁ ବକ୍ଷ-ପିଆଲି ଧରି !

ଜୋଛ୍ନା-ମନ୍ଦିର ଶୀତଳ ସ୍ନିଗ୍ଧ ହାଲୁକା ପବନ ବହେ,
ଉର୍ମିଳକେଶା ରୂପ ସୁକୁମାରୀ ସ୍ପନ୍ଦ ଯହିଁ ନଏ ବଏ;
ନବୀନା କଶୋରୀ କୋମଳଅଂଗ .
କୁସୁମବଣର ମଧୁର-ସଂଗ,
ମନସିଜର ସେ ମନଭେଦୀ-ବାଣ ଏ ପରାଣ ସତେ ନଏ !
ଜୋଛ୍ନା-ମନ୍ଦିର ଗଗନେ ଉଡ଼ଚ ହାଲୁକା ପବନ ବହେ ।

ଗୋଲାପୀ ବସନ ଶୋଭନ କାହାର ନବଯୌବନ ଧରି,
ଆସ୍ମାନୀ ପୀତ ନୀଳ ବସ୍ତ୍ରେ କା' ଚଳୁଚନ୍ତି ଗଲି ଥରି !
ହାସ୍ୟ-ମଧୁର ରସ-ଚଞ୍ଚଳା
ସୁନ୍ଦରୀ ଶତ ଲୋଳ-ଅଞ୍ଚଳା
ମଧ୍ୟେ ମୁଁ ଏକ ତରୁଣ ମୁଗ୍ଧ; କବରୀ ଗଂଧେ ଭରି,
ମନ୍ଦ-ସମୀର ଲୋଳ-ଅଞ୍ଚଳେ ଗଗନଖେଳନ୍ତି ହୋଇ !

ତେଣୁ କ୍ଷମା ମାଗେ ଯୋଡ଼କରପୁଟେ କ୍ଷମାକର ମନୋରମା,
ଏଇ ବୁକୁତଟେ ଯେତେ ରୂପରସ ବାସନା ହୋଇଲା ଜମା !
ଖୋଜୁଛି ଗୋ ସଖି ସବୁରି ସ୍ୱରୂପେ
ମୋ' ପ୍ରାଣ-ଦେବତା ମଂଜୁଳ ରୂପେ
ଧାଇଁଛି ଗୋ ତେଣୁ ନିତ୍ୟ ବ୍ୟାକୁଳ ଫୁଲେଫୁଲେ ଅନୁପମା,
ଆଜି ଅବଶେଷେ ଲଭିଛି ମୁଁ ଯେବେ, କ୍ଷମାକର ମନୋରମା !

—*O*—

ବିଦ୍ୟାଧର ପୁର
୧୪-୧୦-୧୯୪୩

## ॥ ବର୍ଷା-ବ୍ୟଥା ॥

ଗମ୍ଭୀର ଗରଜନେ ନିବିଡ଼ ନୀଳଘନେ
ବଜାଇ ଭଇରବେ ଇନ୍ଦ୍ର କରତାଳ,
ଆଦ୍ୟ ଆଷାଢ଼ର ବିଜୟ ସମାରୋହେ
କ୍ଷିପ୍ତ ସମନାରେ ଏ କରେ ମହାକାଳ ?
ବଜ୍ର କଡ଼କଇ ଦାମିନୀ ଝଲକଇ
ଯାମିନୀ ପୁଲକଇ ଅଂଧ ତମସାରେ,
ପ୍ରଳୟଙ୍କରୋଳ ତୋଳ ବତାସ କରେ କେଳି
ମୃତ୍ୟୁ ତରାସଇ ସମ୍ଭୀତ ସଂସାରେ !

ଘୋର ଏ ରଜନୀର ତିମିର କଳାଗୋଳା
ନିଥର-ନଭ ବୁକୁ ଉଠଇ ଥରଥର,
ମୃତ୍ୟୁ ବିଭୀଷିକା ଖେଳଇ ଚଉଦିଗେ
ଗମ୍ଭୀର ନିଶବଦେ ଧରଣୀ ଯାଏ ଭରି ।
ଲଂଘି କୂଳ ନଈ ଉଗ୍ରା ଯାଏ ବହି
କା'ଲାଗି ଅଭିସରି ଅଜଣା ଦେଶପାରେ,
ଭେକ ଓ ଝିଂକାରି ଶବଦେ ଧରି ଭରି
ବାରିଦ ଯାଏ ଢାଳି ପାଣି ପ୍ରଳୟଧାରେ ।

ଗହ୍ୱର ଅଂଧାର ଘୋଟିତ ଗୃହଧାର
ନନ୍ଦଣେ ପଥଘାଟ··· ଧରଣୀ ଛଳଛଳ,
ବର୍ଷା ବତାସରେ କାତରେ ପ୍ରାଣଥରେ
ବ୍ୟାକୁଳ ଜଳଧାର ବହଇ କଳକଳ ।
ନିଜନ ଚଉହଦ ତନ୍ଦ୍ରା-ବିଜଡ଼ିତ
ସରଣୀ ପରେ ଲୀଳା ରଚଇ ସପ୍ନସ୍ତୂପ,
ବିଜନ ବିଭାବରୀ ବଉଦ ଭେଳା ଚିର
ଉଡ଼ଳା ତୋଫାନ ଏ ଦେଖାଇ ହୁଏ ରୂପ !

ଗଗନ ଛୁଇ ମେଘ ଗର୍ଜେ ଗୁରୁଗୁରୁ
ଚକିତେ ଚମକଇ ଚପଳା ଚକଚକ,
ଏମନ ଦୁରୁଗାମ ନୟନେ ଲୁହଜମେ
ଭଗନମନ ପ୍ରିୟା ଛୁଉଟି ଦକଦକ !
ଓଳତୁ ଧାରୁ ଧାର ଝରଇ ଝରଝର
ତୋଫାନେ ତୋଟାତଳ ଗର୍ଜେ ସାଇଁସାଇଁ,
ତରୁଣୀ କବି ମୋ'ର ତନ୍ଦ୍ରା ନାହିଁ ଆସେ
କାମନା ଅନିବାର ଉଠଇ ଥାଇଥାଇ ।

ଏମନ ଜଳାଗମେ ବାଦଲେ ଭତ୍ତ ନଭ
ମନ୍ଦ୍ରତାନେ ଯଦ୍ଵ ବର୍ଷା ଆସେ ଝରି,
ହୃଦୟ ଲେଡ଼େ ମୋର ପ୍ରଣୟ ଫୁଲଡ଼ୋର
ଅଧର ଲେଡ଼େ କା'ର ଶବୁକ ଯିବ ବରି;
ଅଧୀର ଆଷାଢ଼ର ଏସନ ଆଉଥରେ
ସକାଳନୋହୁଁ ଏଥି ବର୍ଷା ଗଲା ନାଚି,
ତେଆଗି ନଜଧାମ ଆସିଲା ପ୍ରିୟତମ
ଅଂଧ ସମ ମମ ପୀରତ୍ତ ନେଲା ବାଛି !

ବାଦଳ ଆଜି ଯଥା ଶ୍ୟାମଳ ଗିରି ବୁକେ
ଉଲ୍ଲସ-ଉନ୍ମାଦ ରଚଇ ଅଭିସାର,
ନୟନ ଛଳଛଳ ହୃଦୟ ଚଞ୍ଚଳ
ପ୍ରଣୟ ଉଦ୍‌ବେଳ କାମନା ଅନିବାର !
ମାନସ ମୋର ଦିନେ ଏପରି ଘନ୍ତ ତଳେ
ଉଲୁସି ଯେବେ ସାଥି, ହୋଇଲା ଛନଛନ,
ପ୍ରିୟାର ଗୃହବୁକେ ଲଟିଲା ବୁକୁ ମୋର
ଆକାଶେ ଭରିଥିଲା ଘନଜମାଟ ଘନ !

ସେ ଘନ-ଅଂଧାର କଳାରଜନୀ କୋଳେ
କଁକଣେ କା'ର କଁପି ଉଠିଲା ଘଉଛଳ,
ଚୁଁବନ ମଧୁରାଗେ ନରମ ହେଲା ଓଠ
ସରମେ ଆଖିପତା ହୋଇଲା ଛଳଛଳ;
ଏକାଳେ ଚମକିଲା ଦାମିନୀ ଝଲସିଣ
ଅଶନି ଥରେ ଘୋରେ ଉଠିଲା ବାଜି ଘନୁଁ,
ଉଛଳା ପ୍ରାଣ ଆମ ଚମକି ଗଲା ଥର
ପ୍ରଣୟେ ଏକାକାର ନିବିଡ଼ ହେଲା ତନୁ ।

ସେ ଘନ-ଗରଜନୀ-ଗମ୍ଭୀର-ନିଶିଥିନୀ
ଆଜି ଏ ଘନରାତେ ନିବିଡ଼େ ଉଠେ ଜାଗି,
କିଶୋରୀ ସୁନାତନୁ ଖୋଜଇ ପ୍ରାଣଖାଲି
ପରାଣ ବୃହେଁ ଯିବ ପୀରତି କା'ର ମାଗି ।
କେ' ବିରହିଣୀ କାହିଁ ଯକ୍ଷବଧୂ ସର
ଅଧୀରେ ପଥପାନେ ରହୁଛି ମୋର ଗୃହେଁ,
ନୟନ ସନ୍ଧାନୀ ନପାଏ ଖୋଜି ତା'ରେ
ବେଦନାଭରେ ଓଦା-ରଜନୀ ଯାଏ ପାହି !

—୦✱୦—

ଢେଙ୍କାନାଳ
୨୪-୪-୪୧

## ॥ ଯୌବନସ୍ପର୍ଶ ॥

ମୁଁ ଗୋ ଉନ୍ମଦ ହୁଏ ଚନ୍ଦ୍ର-ଉଜଳ-ନିଶିରେ,
ଶ୍ୟାମପ୍ରାନ୍ତରେ ତରଳରୂପାର ପରଶ
କଅଁଳ ଘାସର ସବୁଜ ଗାଲରୁ ସରସ
ଚଉଦିଗେ ଝରେ ଅଜଣା ପୁଲକ ହରଷ
ଧରଣୀ ବକ୍ଷ ଭରିଉଠେ ଯେବେ ହୀରା ମୁକୁତାର ଶିଶିରେ,
ମୁଁ ଗୋ ଉନ୍ମଦ ହୁଏ ନର୍ତ୍ତନ ସେଇ ଚନ୍ଦ୍ର-ଉଜଳ-ନିଶିରେ ।···

ଝଲମା ନଗାଡ଼ ଆକାଶ ଅଙ୍କୁ ଶସ୍ୟ କେଦାର ଥରଇ,
ଉତଳା ପବନ ଉଦ୍ଦାମ ବେଗେ ଭଉଁରି ଉଠାଇ ଘୁରଇ !
ସ୍ତୂପଶିଖର ଶୀର୍ଷେ ବରଷେ ଜୋଛନା ···
ଆଖି ମେଲି ତା'ରେ ଗୃହେଁ କେଉଁ ଗୃରୁ-ଲୋଚନା ?
ଦୂରବଣ ତଳେ ଗୁଛ ଆଲୁଅର ମାୟାପୁରୀ ହୁଏ ରଚନା;
ନଜାଣେ କାହିଁକି ତେସନ ଲଗନେ କୋହଉଠେ ଏ ମୋ' ଗୁଡରେ,
ଲକ୍ଷ ବୁକୁର ବେଦନା-ରାଗିଣୀ-ଚଞ୍ଚଳ-ଗୃରୁ-ସନ୍ଧିରେ !!!

ରଜନୀଗଂଧା ସୌରଭ ବାଁଟେ ଗୁଞ୍ଜର ଉଠେ ପବନ,
ଅଙ୍କାଟେ କିଏ ଆହ୍ୱାନ କରେ ଜାଗିଉଠ ଆରେ ତରୁଣ !
ପ୍ରସରଗଗନ ଡାକଦିଏ ସଖା ଆସଗୋ,
ବିଶ୍ୱରେ ଆଜ ଫୁଟିଉଠିଅଛି ମଧୁମଂଜୁଳ ହାସ ଗୋ !
ନୀଳାମ୍ବର ହୀର-ମେଘ ଭାସିଯାଏ ଦିଗ୍‌ବଳୟର ଛାତରେ,
ମୁଁ ଗୋ ଉନ୍ମାଦ ହୁଏ ତେସନ ମଧୁର ନିର୍ଜନ ନୀଳନିଶିରେ !

ବିପୁଳ ଶୋଭାର ପସରା ମେଲାଇ ପାଗଳ ହୁଅଇ ଧରଣୀ,
ସେ କେଉଁ କୁଆଁରୀ ନୂପୁର ଛନ୍ଦେ ପୁଲକ ଉଠଇ ସରଣୀ !
ଝର କଳକଳ ଦୂର ବନତଳ ଶୋଭନ,
ଅଜଣା ଫୁଲର ଗଂଧେ ବିକଳ ପବନ;
ଅନ୍ତରେ କିଏ ବିଦ୍ରୋହ କରେ
ତେଜରେ ତରୁଣ ଏ ତୋ'ର ପୁରୁଣା ଭବନ !!
ନଜାଣେ କେସନେ ସଯତ୍ନ କରେ ତରୁଣ କବି ତା' ଛାତରେ,
ମୁଁ ଗୋ ମାତାଲ୍ ସମାନ ମାତିଉଠେ ସେଇ-
ଗୃହୁ ଚଞ୍ଚଳ ନୀଳ ନିର୍ଜନ ରାତରେ !!!

—୦*୦—

ଢେଙ୍କାନାଳ
୨୦-୩-୪୨

## ॥ ବସନ୍ତ-ରାସ ॥

ସୁରଭିଇ ଫୁଲ ଆକୁଳଗଂଧ କାନନେ
ବକୁଳ କୁଂଜେ କୋମଳେ ପରଶି ମଧୁର
ଛୁଟେ ଦୂରନନ୍ଦେ ମନ୍ତ୍ର ମଳୟ ସଘନେ
ବିରହୀ ପରାଣି କରିଦଏ ବ୍ୟଥା-ବିଧୁର !

ବସନ୍ତର ଏ ଆଦ୍ୟ ରଜନୀ ପରଶ
ଚିର ନଭବୁକୁ ମନ୍ଦେ ଥରଇ ଜୋଛନା
ନବମଲ୍ଲିକା ମଂଜୁଳମୁଖ ସରସ···
ପୂର୍ଣ୍ଣ ଆଜି ତା' ଜନମ ଜନମ ଯାଚନା !

ଝିଲ୍ଲୀ ଡ଼ାକଇ ବକୁଳ କାନନ ପଥେ ଗୋ
ଗମ୍ଭୀର ରଜନୀ ନିରଜନ ରାଜସରଣୀ,
ଏସନ ଲଗନେ ଆସୁଚ ସଜନୀ ସତେଗୋ
ମୃଦୁ ପଦପାତେ ଧନ୍ୟ କରି ଏ ଧରଣୀ !

ମଳୟ ମନ୍ଦ ବଧୂର ଗଂଧେ ଅଧୀର
ଆମ୍ର ମୁକୁଳ  ଝରିପଡ଼େ ଦୂର କାନନେ
ପିକ ଡ଼ାକଦଏ—ରସିକ ଆସ କେ ସଧୀର
ଜୋଛନା-କୁଆଁ ଶି ଅମ୍ଭସରେ ନୀଳଗଗନେ!

ନିଭୃତେ ଧ୍ୱନେ ବାଜିଲ୍ କାହାର ମୁରଲୀ
ଆକାଶେ ବତାସେ ଭରିଗଲା ଗୁରୁବେଦନା
ତରଙ୍ଗ ଉଠିଲ୍ ବିରହିଣୀ ଚିତ୍ତ ତରଳ
ଛୁଆଁଇ ଗହନ ଗୋପନ ପୀରତି ଯାଚନା !

ମଧୁର ରଜନୀ ଜୋଛନା-ଚୁମ୍ବିତ ଧରଣୀ
ବକୁଳ ସୁରଭି ପୁଲକାଇ ଦିଏ ମରମ
ନୂଆ ବୁକୁତଟେ ସୁଆଗିନୀ ଝୁଲେ ତରଣୀ
ଚକିତେ ଚମକେ କମଳ କଢ଼ିରେ ସରମ !

କଜଳ-ନୟନା କଳାଡୋଳା ତା'ର ସଜଳ
ଦୂରଦିଗନ୍ତ ପାହ୍ୱପାହ୍ୱ ଆସେ ରଜନୀ
ବୁକୁତଟେ ତା'ର ପୀରତି ଉର୍ମି ଉଥଳ
ମୋ ଲାଗି ବଶିଲ୍ ଦୁଃସାହସ ମୋ' ସଜନୀ !

ଚୁମ୍ବି ସମୀର ସୁମନ ମଂଜୁ ଅଧର
ଜୋଛନା-ଚକଚ ବକ୍ଷରେ କଳ୍ପ ବଧୂର
ପିଆଲ୍ପ ପୂରିଲ୍ପ ଫେନିଳ ପୀରତି-ମଦର
ପୀରତି ସିନ୍ଧୁ ଉଦ୍‌ବେଳ ନବ-ବଧୂର !

ଶାନ୍ତ କାନନ···ମଳୟ ସୁରଭି-ଅଂଧ
ପାଶେ ବହିଯାଏ ବୀଣାଝଂକାସ୍ୱ ଝରଣା···
ବକୁଳ ବଢାନେ ଗୁଈ-ଆଲୁଅର ଛନ୍ଦ
ଶ୍ୟାମଘାସ ଶିରେ ଶୃଂଗାର ଶେଯ ରଚନା !

ଅଜାତର ଧନ ଅକାରଣ ପଡ଼େ ମନେ ଗୋ
ଅନ୍ତରେ ଆଜି ଜାଗିଛି ପ୍ରଳୟ ଅତୁଳ···
ନଈପଡ଼େ ଜହ୍ନ ବଧୂର ବକୁଳ ବନେଗୋ
ଅଧୀର ପରାଣ ବୃଥା ହୁଏ ମୋର ଆକୁଳ !

ଚୈତ୍ର ଆକାଶ···ମଳୟ-ମଦର ରଜନୀ,
ପ୍ରାଣ ମନ ଚକ୍ଷୁ ମୁଗ୍ଧ କରେ ଏ ପବନ;
ଏଲଗନେ ଦୂରେ ରହିଲ କା'ପୁରେ ସଜନୀ,
ଘର ଛେଡ଼ି ଆଜି ଖୋଜିବି ଭୁବନ ଭୁବନ !

—✳୦✳—

ଢେଂକାନାଳ
୧୪-୧୦-୧୯୪୩

## ॥ ବର୍ଷାବାସକ ॥

ଆକାଶ ଧରଣୀ ଅନ୍ଧାର କରି
ବର୍ଷା ଆସିଛୁ ଆଜି ଗୋ,
ଭଦ୍ର ବାଦଲେ ନହବତ ଉଠେ ବାଜି ଗୋ !
ସ୍ନିଗ୍ଧ ଆସାର ଝରେ ଝରଝର
ବନଲତା ଶାଖା ଝୁଲେ ଥରଥର
ଭାଦର ସଙ୍ଗିଣୀ ଆଦର ଗଗନେ
ରମ୍ ଝମ୍ ଉଠେ ବାଜି ଗୋ,
ଆଦ୍ୟ-ଭାଦରେ ବର୍ଷା ଆସିଛୁ ଆଜି ଗୋ !

ଆଗୋ ସଯତନେ ନବ ମାଧବନେ
କେ ଫୁଟାଏ ଫୁଲ ସଘନେ,
ମେଲି ମାଳବାସ ସିକ୍ତ ଶୀତଳ ପବନେ !
ଧରଣୀର ଡୋଳା ମାରେ ଛଳଛଳ
ଭିଜା-ଫୁଲ-ବାସେ ଅନ୍ଧ··· ଉଥଳ
ଉର୍ଦ୍ଧ୍ୱେ ବାଦଲେ ଲାଗେ କନ୍ଦଳ
ଲୁହ ଝରିପଡ଼େ ଗଗନେ,
ମାଧବନେ ଫୁଲ ଫୁଟାଏ କେ ଆଗୋ ସଘନେ ?

ବୁକୁଭରା ନଦୀ ଉଠେ ଫୁଲିଫୁଲି
କା'ର ପାଶେ ଛୁଟେ ଅଧୀରେ,
ପିଚ୍ଛିଳ ପଥ ··· ପଦସ୍ଖଳ ବଧୂ ସଧୀରେ !
ଏସନ ବର୍ଷା··· ବୁକୁ ଥରଥର
ଝଡ଼େ ବନତଳ କରେ ମରମର
ସବୁଜ ଶୀତଳ ଅଂଧାର ବେଳ
ଘରେ ଫେର ଫେର ଦ୍ଵଧିରେ,
ସନ୍ଧ୍ୟା-ହରିଣି ! ପଦ ସଞ୍ଚାଳ ସଧୀରେ !

ବନଗିରି ଶିରେ ଗୃହ୍ଁ ସଖି, କା'ର
ନୂପୁର ଉଠିଛି ଚମକି,
ଚକିତେ ବାଦଲ ଶୁଣେ ଦେଖ ତାହା ଥମକି !
ନବତମାଳର ନୀଳଛାୟା ତଳେ
ଆକୁଳା କଳାପୀ ନାଚେ ଉଲ୍ଲେ
କପୋତ ଯୁଗଳ କଳକୁହୁକେ
ବନଭୂମି ଉଠେ ଜମକି,
ଗିରି ଶିରେ ଶିରେ ନୂପୁର ଉଠିଛି ଚମକି !

ପୁଲକ-ସ୍ୱଧୂର ବର୍ଷା ! ନୂପୁର
ବଜାନାରେ ଆଜ ଆକୁଳେ,
ଝୂହ୍ନିଁ ଦେଖ ବଧୂ ଝନ୍ଦନ କରେ ବ୍ୟାକୁଳେ । •
ମାଜୁଁ ମାଳଢର କରନା ନପୂନ
ଫୁଲ୍ଲ-କୁସୁମ ନୋହଛୁ ଚପୂନ
ଏବେ ଡ଼େଉର ଅଛୁ ବାସକ ଶପୂନ
ଭରନା ଚରଣ ଆଭୁରେ,
ପୁଲକ-ସ୍ୱଧୂର-ନୂପୁର ବଜାନା ଆକୁଳେ !

ଦଶଦ୍ଧାଗଭଂର ଆସେ ଗୋ ବର୍ଷା
ପ୍ରାଣ ଭର ଉଠେ ଅଧୀରେ,
ଲତା କୋଳେକୋଳେ ଫୁଲ ପଡ଼େଝ୍ଝର ସଧୀରେ ।
ଆଗୋ ସୁନ୍ଦର ! .ମଧୁମୂଖଶିଶୀ
ମୁକୁରେ ନରେଖି ନଅ ଗୃହୁକର
ସୀମନ୍ତ ଚରେ ସିନ୍ଦୂର ଗାର
ଝାଣିନଅ ସ୍ୱଣି ସ୍ୱଧୂରେ,
ଡେଉର ନାହିଁ କର ପ୍ରାଣ ଭରଉଠେ ଅଧୀରେ !

ଆଗୋ ସୁନ୍ଦର ! ସନ୍ଧ୍ୟା ଆସିଛି
ଅନ୍ଧାରେ ଭର ଧରଣୀ,
ତରତରେ କେଶ ସାଜ ଚଂପକ-ବରଣି !
ସିକ୍ତ ସମୀର ବାସେ ଭରପୂର
ବେଣୁବନେ ଝୁରେ ବର୍ଷା ବଧୂର
ରଜନୀଗଂଧା ଗଂଧେ ମଧୁର
ପୁଲକିତ ପୁର ସରଣୀ,
ଚୁମ୍ବିଳ କବରୀ ସାଜିନଅ ସୁନାବରଣି !

ନୀଳ ଜଳଧରେ ଶୁଭ୍ର ବାଦଲେ
ବଜ୍ର ଉଠଇ ବାଜ ଗୋ,
ଆଗୋ ସଖି, ଆଜ ବାସକଶୟନ
ଫୁଲଶେଯ ନିଅ ସାଜଗୋ !
ଆକାଶେ ବିଜୁଳୀ ନାଚେ ଛନଛନ
କୃଷ୍ଣା-ରଜନୀ ··· ଭେକଗରଜନ;
ଭିନ୍ନ ଆମର ଯୁଗଳ-ସପନ
ଏକ ହୋଇଯିବ ଆଜଗୋ,
ଆଗୋ ଚଞ୍ଚଳ ଫୁଲଶେଯ ନିଅ ସାଜଗୋ !

—୦✲୦—

କଟକ
୪-୪-୪୪

# ॥ ଫାଲ୍‌ଗୁନୀ ॥

( ଉନ୍ମାଦ )

ଚଂପକ ବନେ କଂପନ ଜାଗେ ଫାଲ୍‌ଗୁନ ଡାକେ ଦୁଆରେ
ଫୁଲଫୁଟାହସ ଫୁଟିଉଠେ ସଖି, ଲକ୍ଷ ବକୁଳ ପୁଆରେ
ବଧୂର ଗଂଧ ମନ ଛନଛନ କଲାଣି,
ଆଗୋ···ମହୁଆ-ମଦନ-ଭୋଳା-ମଧୁପର ମଧୂପିଆ ଲାଗିଗଲାଣି !

ଆଜ··· ରୂପକୁଆଁଖିରେ ଅଙ୍ଗୁଳି ଛୁଇଁ କଲ୍ କିଏ ଜାଗ୍ରତ,
ଚକ୍ଷୁ ପଲକେ ଐନ୍ଦ୍ରଜାଳିକ-ଖେଳ ଲାଗିଗଲା ଶତ;
ଆଜ··· ଫଗୁଟଗୋଧୂଳିର ବନେ,
କା'ର··· ଖିରୁଚଞ୍ଚଳ-ନୂପୁର ରୁଣିଲା କଣିକଣି ନକ୍ୱଣେ ?

ମନପିଜ ବୁକୁ ଚିର ନଖଧାରେ କେଉଁ ଫଗୁଣର ପ୍ରିୟ,
ରକ୍ତ ବଲେପି ସବୁର ଓଷ୍ଠେ କହ୍ଲାର—ଅର୍ଘ୍ୟ ନିଅ !
ଆଜ···କେଉଁ କୁଆଁଖିର ଚତେ,
ଫାଲ୍‌ଗୁନ ସତେ ପ୍ରଣୟୁ ଭରିବ ମୋ'ଲାଗି ଅଲକ୍ଷିତେ ?

ସଖି !···ଡମ୍ବ ବା ଆସିଚ ଦୂରୁଦୂରୁବୁକେ ଜଳକଳସୀଟି ଧରି,
ସଂଧ୍ୟା ନଇଁଚ ତବ ଓଠପୁଟେ କବା ସଙ୍ଗୀତ ଭରି ?
ଆସ···ରକ୍ତ-ଅଧରେ ସଲଜ ହାସ୍ୟ ଟାଣି,
ଅନ୍ତର ଖୋଲି ନିଜଜନ ସମ କଥାପଦେ କହ ରାଣି !
ଆସ··· କଂପିତବୁକେ ବ୍ରୀଡ଼ାନତମୁଖେ ଦୋହଲାଇ ନୀଳବେଣୀ,
ସଖି !···ଅମିୟମୟୀ ସେ ଗଣ୍ଡୁ ତମର ନଏଁ ଅମୃତ ଘେଣି !!

ସଙ୍କେତ ଦିଅ ଆଜ ···
ମଧୁଫଗୁଣର ଏ ଫୁଲ-ସଜେ
ବିକଶାଅ ତବ ବଦନ-କଂଜେ
ଝରକୂଳର ଏ ମାଧବୀକୁଂଜେ
କଂକଣ ଉଠୁ ବାଜ !!

ଶୂନ୍ୟ କଳସୀ ପଡ଼ି ରହୁ ଝରେ ପରେ ଭରିନେବ ଜଳ
ଆଗୋ···କଳାମୀର ସମ ନୟନ ତମ ହେଲା ଏସେ ଛଳଛଳ !
ଆସ ··· ପଥପାଶଫୁଲ ମର୍ଦ୍ଦି ଚରଣେ ଦୁବା କୋମଳଶେଯେ,
ଆସ ··· ଫଗୁ-ଗୋଧୂଳିର ରଂଗଉଲୁଟା ଦିଗଂତ ଡାକେ ଏସେ !!

ଏଇ ଯେ ଗୀତ ଉଠିଆସେ ନୀଳ ପଥପାଶ ବେଣୁବନେ,
ଆଗୋ···ଦୁଲୁସଂଟାସୁରେ କପୋତ ମାଗିଛି କେଉଁ କପୋତୀର ମନେ ?
ନିରମଳ ଏଇ ସଂଜସପନ ··· ଚଳାକଳା ଡୋଳା ତା'ର,
ଆଗୋ···ମହୁଆ ବନେ ଶାଳଫୁଲ କିଆଁ କଂପଇ ଥରଥର ?

ଶୁଭ୍ରବଳାକା ଚଳାଏ ପକ୍ଷ ସେ କେଉଁ ଗୁପ୍ତମାଡ଼େ,
ଆଗୋ···ମୁଖର-ସନ୍ଧ୍ୟା ··· ଝିଲ୍ଲୀ ଡ଼ାକଇ କେଉଁ ବେଣାବନ ଘାରେ ?
ଘନଘନଘନ ଥରେ ବେଣୁବନ ଛନଛନ୍ ମୋର ମନ,
ଏଇ ନିରଜନେ ଆସ ସଖି, ଥରେ କରିନଏଁ ଆଲିଂଗନ !

ଆସ···ଖୁରୁପଦ ଝପାଚେ,
ଆସ ··· ଗୁରୁଚଞ୍ଚଳ ଗୁଁଦ-ଝଳମଲ
ଫଗୁଣ ଅର୍ଦ୍ଧରାତେ ! ···

ଆସ ଆସ କଳ୍ପନା !
ଆସ··· ଜୋଛ୍ନା ଶିଶିରେ ସିକ୍ତ-ଶରୀର କରବୀର ଜଳ୍ପନା !
ଆସ ଚଞ୍ଚଳ ଚରଣ ଛନ୍ଦେ
ହେନା ବକୁଳର ସୁରଭି ଗନ୍ଧେ
ନବ ମାଳତୀର ମଧୁ-ଆନନ୍ଦେ
ଧୀରପଦକଂପନେ,
ଆସ ··· ଚଂପକ ବରଣା ! ଆସଗୋ ରୁଣୁଝୁଣୁ ଶିଂଜନେ !!

ଆଦଫଗୁଣର ନବପୁଷ୍ପିତା ଆଗୋ ଆଗୋ ଚଞ୍ଚଳା !
ଆମ୍ର-ମୁକୁଳା କୋକିଳା-ସଂଗୀ ଚଂଦନ-ଉଜ୍ଜ୍ୱଳା !
ଆସ ··· ଭୀରୁ ମଳୟର କଣ୍ଠେ ···
ଆସ···ସରସୀକ୍ଷିପ୍ତା ମୃଣାଳସମ ହଂସବଳାକା ଅଙ୍ଗେ !
ଆସ···ତାଳତମାଳର ମଳୟାଇତଳ ନର୍ତ୍ତର ଉପକଣ୍ଠେ !!

ଆସ... ଆସଗୋ ସଂଗୋପନେ,
ପଦ୍ମପଲାଶ ଫୁଲ-ସିଞ୍ଚିତ...
ସ୍ୱପ୍ନପଦପାତେ କର କଂପିତ
ଝରଣରେ ଏ ଯେ ମଧୁ-ସଙ୍ଗୀତ
ନବ ମାଳଞ୍ଚର ବନେ,
ଜ୍ୟୋଛ୍‌ନା ଚମକେ ଚଞ୍ଚଳ ନୟନେ !!!
...

( ବନ୍ଧୁର )

ନୂଆ ଜୀବନର ଯୌବନ ତଳେ ଲୁପ୍ତ ଫଲ୍‌ଗୁନଦୀ,
ଅଜ୍ଞାତେ କା'ର କାଉଁରୀପରଶେ ଉଚ୍ଛଳେ ପୁଲକଇ !
ନବ ମୁକୁଳର ପରାଗ ଗୁଞ୍ଜିଲା ନିଭୃତେ କେଉଁ ପିକ...
କେଉଁ...ସୁନ୍ଦର ନିର୍ଭୀକ ?
ରଜତ ସନ୍ଧ୍ୟା, ବନ୍ଧୁଦୂରୁଁ ଶୁଭେ ମନ୍ଦର ଆଳନ୍ତକ ।

କେଉଁ ପାଗଳର ବକ୍ଷ ଥରାଇ ପବନ ବହିଲା ଆଜି,
କେଉଁ ବୀଣାତାରେ ମୂର୍ଚ୍ଛନା ଉଠେ କା'ର ଅଙ୍ଗୁଳି ବାଜି ?
ସ୍ତବ୍ଧ... ନୀରବ... ନିର୍ମଳ ଜହ୍ନ ମଧୁରଗନ୍ଧରାତି,
ଆଗୋ...କେଉଁ ଯାଦୁକର ମନ୍ତ୍ର ପ୍ରୟୋଗେ ସରବେ ଉଠିଲା ମାତି ?

ନର୍ତ୍ତୁନ୍ ନୀରବ ରାତ୍ରି··· ଗଗନେ ଲକ୍ଷ ସନ୍ଦେହ ତାରା,
ଅଜାତର କେଉଁ କୃଷ୍ଣ ପାଇଁକ ହୋଇଲେ ଆତ୍ମହରା ?
କେଉଁ ଫଗୁଣର ଶୁକ୍ଳନିଶାରେ କେଉଁ ବୃଷଭାନୁଜେମା
କେଉଁ ଯମୁନାର ତଟନିକୁଂଜେ କରିଲ ବନ୍ଧାପନା ?
ଆଜି ସେ ସବୁର ସ୍ମୃତି ସମୀରଣେ ମିଶିମିଶି କହେ କଥା,
ଆସ ସଂଗିନି ! ତାରି ଆରାଧନେ ଲିଭିଯାଉ ଆମବ୍ୟଥା !

ବର୍ଷକପରେ ମର୍ତ୍ତ୍ୟଦୁନିଆରେ ଥରେ ଆସେ ଫାଲ୍‌ଗୁନ,
ମରମଣିଷର ମରମର ଦହେ ଥରେ ଫୁଟେ ଯୌବନ !
ସୁନ୍ଦର ଗୁରୁ ଗୋଲାପବୃନ୍ତେ ସୁନ୍ଦରତର କରି,
ରଂଗ ଫୁଟାଏ ପଳାଶ ଅଧରେ ଅଦୃଶ୍ୟ ଯାଦୁକରୀ !
ଅଖିଳ-ଧରଣୀ ଜନ୍ମଦିବସୁଁ ଲକ୍ଷ ପିଆସା ଧରି,
ଚୁଂବନ ପାଇଁ ପ୍ରିୟ ଫାଲ୍‌ଗୁନ ଥରେ ଆସେ ଅବତରି !···

ଆସ ଆସ ସଂଗିନୀ,
ଆସ ···ଝରା ବକୁଳର ଦଳେ,
ଆସ ···ଫୁଲ୍ଲ ପିଆସୀ ବଂଶୀ-ମୁଖର ମଳୟର ହିଲ୍ଲୋଳେ !

ଆସ ···ରକ୍ତଚରଣେ ରକ୍ତିମତର କରି,
ଆଗୋ···ଚପଳପବନେ ଅଞ୍ଚଳ ତବ ଉନ୍ମାଦେ ଉଡୁ ଥରି !

ଆସ ···ନୀଳ ନର୍ତ୍ତର ତୀରେ,
ଆସ ···ସନ୍ଧ୍ୟା ଆଗମେ କପୋତୀର ସମ ଛଳଛଳ ଆଖି ନୀରେ,
ଆସ ···ବାସର-ଶଯ୍ୟନେ ବଧୂଟିଏ ସମ ଅବଗୁଣ୍ଠିତ ଶିରେ !!
ଆସ ···ଖଞ୍ଜନନୟନ ହରିଣୀ ସମାନ ବ୍ରୀଡ଼ିତ ବାସନାଗାରେ !!!···

ଆସ ···ଗଣ୍ଡେ ତମର ଗୋଲାପରଂଗ ନେଇ,
ଆସ ··ଦ୍ରାକ୍ଷାକୋମଳ ଅଧର ଯୁଗଳ ଥରଥର କଂପାଇ ।
ଆସ ···ମହୀପୃରେ ରଖି ନପୂର ତବ ଥିରିଥିରି ପଦପାତେ,
ହେନା ବକୁଳର ବାସ-ଚୁଂବିତ ଶୀତଳଶାନ୍ତରାତେ,
ଆସ ···ମାଳତୀ କୁଞ୍ଜ ତଳେ,
ନାଗିଣୀ ସମାନ ତରଙ୍ଗିତା ବେଣୀ ଫିଟିପଡ଼ୁ ଚଞ୍ଚଳେ !

(ପରିଣତି)

ଆଜ ···ମଧ୍ୟଗଗନେ ପୂର୍ଣ୍ଣିମାଚନ୍ଦ୍ର ସହସା ଉଠିବ ହସି
ସହସା ବାଜିବ ମିଳନତୀର୍ଥର ପୁଲକ ମଧୁର ବଁଶୀ
ଦୂର ଶାଲ୍ମଳୀ ସୁପ୍ତକୁଳାୟୁ ଚକୋର ଉଠିବ ଗାଇ
ବଗବୁଡ଼ା ସ୍ନିଗ୍ଧ-ଚନ୍ଦ୍ର-ରଜନୀ କଂପିବ ଥାଇଥାଇ;

ତେବେ···କେଉଁ ଯମୁନାର ଘାଟରେ
କା'ର···କୋକନଦ ବ୍ୟସ୍ତଚରଣ ମାଧବୀକୁଞ୍ଜ ମାଡ଼ି
ଖୋଜୁ ମନ୍ଥରତର
କେଉଁ ରସିକର ସନ୍ଧାନ ଆକଣ କଂପିବ ଥରଥର ?

ଏଇ ମରୁଭୂମି ବାଲିପ୍ରାନ୍ତରେ ଥରେ ଜାଗି ଉଠେ ଶ୍ୱାସ
ଏଇ ବେଳାଧାରେ ଶତ କଳ୍ପନା ରଚିଲେ ଦୁଃସାହାସ
ଏଇ ଧରଣୀର ବୁକୁ ଚୁମ୍ବନେ ଚଞ୍ଚଳ ଛନଛନ
ଉର୍ଦ୍ଧ୍ୱ ଆକାଶୁଁ ଲକ୍ଷ ତାରକା ଝଡ଼ିଲେ ମୁକ୍ତାସମ !
ଏଇ ନର୍ତ୍ତର ଧାଏଁ ଖରେ କା'ର ବୁକେ ଉଡ଼ିବାଲାଗି
କଅାଁ···ଶୈଳଶିଖରେ ଜଳଦ ନପୃତ ଯାଏ ଆଶ୍ରୟ ମାଗି ?

ଲକ୍ଷ ଯୁଗରେ ଏଇପରି ଆସେ ଥରେଥରେ ସ୍ପନ୍ଦନ
ଶତ··· ବର୍ଷା ତମିରେ·ଆଶ୍ୱିନ ଶ୍ୱେତ କାର୍ତ୍ତିକେ କଂପନ
କେବେ···ଦେଖିଚକି ସଙ୍ଗିନ,
ଫଗୁଲ-ଫଗୁଣେ ଫୁଲଶେଜ କେବେ ପାରନାଇଁ ରଂଗିମା ?

ଫୁଲଶର ମାର କେଉଁ ମନସିଜ ପାଗଳ କରିଲା ଆଜ,
କେଉଁ ପାଷାଣ ଗୁରୁଓଠେ ଦେଲା ଈଶ୍ୱର ଓଠ ମାଜ ?
କେଉଁ ହିମାଳୟର ତଳେ,
ସିନ୍ଧୁ-ଶାବକେ ବାଳକାଗଙ୍ଗା ଧାଇଁଲା ଉତ୍ତରଳେ ??

ଆସ ଆସ ଚଞ୍ଚଳା !
ଆସ ···ଜୋଛ୍‌ନାଶିଶିରେ ଭିଜାଇ ଅଳକ ମୁକୁଳିତ-ଅଞ୍ଚଳା !
ଆସ ···କାନନଚାରିଣୀ ଶକୁନ୍ତଳା ଗୋ କୁସୁମିତ କୁନ୍ତଳା !!

ଘୁଙ୍ଗୁରୁ ଚଞ୍ଚଳ ଚରଣ ଛନ୍ଦେ
ଆସ ବକୁଳର ବିପୁଳଗନ୍ଧେ
ନବଡ଼-ହିଆର ମିଳନ-ବନ୍ଧେ
ଗୋପନ ଗୁଂଜରଣେ,
ଆଜ ଦୁନିଆର ଦୁଇଟି ଜୀବନ ମଜିଯାଉ···ହଜିଯାଉ
ଗଂଧ-ବିଧୁର ଫାଲ୍‌ଗୁନୀ ସମୀରଣେ !!

—୦✻୦—

କଟକ
୧୭-୮-୧୯୪୪

## ॥ ମଧୁ-ଚନ୍ଦ୍ରିକା ॥

ନବବଧୂ, ବରବନ୍ଧୁ !
କାନ୍ତ କୋମଳ ଘନ ବାହୁପାଶ
ଶିଥିଳ କର ମୋ' କଂଧୁଁ !
ଉତ୍ସବ ରାତ୍ରି ଅବସାନ ପ୍ରାୟ
କ୍ଳାନ୍ତ ଜନତା ନିଦ୍ରିତ ପ୍ରାୟ
ଶାନ୍ତ ବତାସ ଛୁଇଁ ଛୁଇଁ ଯାଏ
ଆମ୍ର କାନନ ଶିର,
ନୀରବ ତାରକା··· ତନ୍ଦ୍ରା·ଏ ଧରା
ନୀହାର ଅଶ୍ରୁ ନୀର !!

ମଧୁଶଯ୍ୟାର ବକ୍ଷ
ଛନ୍ଦିତ ଆମ ମୁଗ୍‌ଧ ମିଳନେ
ମରେ ନକ୍ଷତ୍ର ଅକ୍ଷ !
ଅଞ୍ଚଳ ତବ ଅସହାୟ ସଖ
ଲୋଟିଛି ଚରଣେ ଉନ୍ମତ୍ତ କଖ
ତବ ଯୌବନ ସ୍ମୃତି ମହିମାରେ
ଛିର ଗର୍ବିତ ପଖ,
ଶିଥିଳ କବରୀ- ଅଙ୍କୁଁ ପଡ଼ୁଛି
ମୂର୍ଚ୍ଛିତ ଫୁଲ ଝଖ !

ଆଗୋ ସୁନ୍ଦରୀ ବଧୂ,
ଶେଷବାର ପାଇଁ ଗଣ୍ଡେ ମୋହର
ଲଗାଅ ଓଷ୍ଠ-ମଧୂ !
ତାରୁଣ୍ୟ ମମ ଧନ୍ୟ ସଜନ !
ବକ୍ଷେ ତମର କାଟି ଏ ରଜନୀ,
ବହୁ ଦିବସର ସନ୍ତାପ ଆଶା
ପୂର୍ଣ୍ଣ ରୂପସି ଆଜ;
ତବ ଯୌବନ- ସାଗରେ ପଡ଼ୁଛି
ଆକୁଳ ଉର୍ମି ଭାଜ !!

ମନେ ପଡ଼େନିକି ସଖି,
ଚିରକାଙ୍‌କ୍ଷିତ　　　　　　ବକ୍ଷେ ଯେଦିନ
କହିଥିଲି ମଥା ରଖି ।
'ରାଣୀ ମୋର, ସତେ ଭଲ କରେ। ପାଅ
ବକ୍ଷେ ଜଳେ ଯେ ନିଖିଳର ଦାହ
ଖିଳ ଜଗତର-　　　　　　ରୁଦ୍ଧ ଦୁଆରେ
ତମର ମୁଁ ନିକି କୁହ'
ନୀରବ ନୟନେ　　　　　　ଅନାଇଲି ଖାଲି
ଅଶ୍ରୁ-ସଜଳ-ମୁହିଁ ।

କୈଶୋର ଅଭିସାର,
ବକ୍ଷେ ଢାଳନ୍ତି　　　　　　ରଙ୍ଗୀନ ସ୍ମୃତି
ଆକାଙ୍‌କ୍ଷା ଅନିବାର !
କ୍ଳାନ୍ତ ବିହଗ ଫେରିଆସେ ନୀଡ଼େ,
ଅଂଚଳ ଛୁଇ ଦିବସର ଶିରେ
ଉପଲ-ବ୍ୟଥିତ-　　　　　　ନିର୍ଝର କୂଳ
ନଇଁ ନଇଁ ଆସେ ସନ୍ଧ୍ୟା,
କାନନ ଉହାଡ଼େ　　　　　　ଫୁଟିଛି ଅଳସେ
ମାଳତୀ, ରଜନୀଗନ୍ଧା !

ନବ ଯୌବନେ ଜଡ଼ାଇ ଦେଲାକେ
ମଧୁମନ୍ତ୍ରର ଆଣି,
କଳାଡ଼ୋଳା ତଳେ ଠୁଳ ହେଲା କିଆଁ
ଲୋତକ ବିନ୍ଦୁ ଗଣି ?
ଥିର ଥିର ହାସେ ମନେ ପଡ଼େ ସଖି
ଝର ଆରପାରୁଁ ଗୁହାଁଳ ସଳଖି
ମୁଗ୍ଧ ଆଖିର ସେ କରୁଣ ଡାକ
ଅଥିରେ ବାଜିଲା ଶ୍ରବଣେ,
ପୁଲକିତ ଫଗୁ- ଫାଲ୍‌ଗୁନ ପ୍ରିୟ
ଫୁଲ-ସୁରଭିତ ଲଗନେ !

ବକ୍ଷ ଦୁକୂଳ ଦରମୁକୁଳିତ
ଚକ୍ଷେ ଅଳସ ଶିଖା,
ଚଂପକ ସମ ଅଙ୍ଗୁଳି କମ
ଅଂଚଳ ଉଡ଼େ ଥିର !
କିଆଫୁଲ ଭିଡ଼ା ସ୍ନିଗ୍ଧ କବରୀ
ପାଗଳ ପବନ ବାସ ନିଏ ହରି
ଫଗୁ-ଛଳଛଳ ନବ-ଯୌବନ
ଶତ ରଞ୍ଜନ କରିଲା,
କା'ର ଲାଗି ସଖି କୁଂଜ କାନନେ
କପୋଳୀ ଗୁମରି ମରିଲା ?

ମଲ୍ଲୀ ଉଡ଼ାନ୍ତୁଁ                ବାଜିଲା ସହସା
ମଧୂ-ମଞ୍ଜୀର ତାନ,
କେଉଁ ନନ୍ଦନ                ଇନ୍ଦ୍ରପୁରୀର
ଅଲଅଳ ଜେମାଗାନ !
କିଶୋରୀ ତମେ, ମୁଁ କିଶୋର ଗୋ ସଖି,
ଯୁବ-ରାଇଜର ବୁଭୁକ୍ଷୁ-ପକ୍ଷୀ,
ନୀଡ଼ ବାନ୍ଧିଲେ                ଗୋଲାପ କୁଂଜେ
ଚନ୍ଦ୍ରମଦର ଲାଳସେ,
ଅବିବାହିତ ଓ                ଅବିବାହିତା ର
ଚଞ୍ଚଳ ଗୃରୁ ଗାନେ !

ଶିଂକିତ ଛନଛନ
ଅଧର ଇଚ୍ଛେ                ଚୁଂବନ, ତନୁ
ଯୌବନ ପରଶନ !
ସେଦିନର ସେଇ ଘାସର ଶଯ୍ୟା-
କୋଳେ ଢଳିଥିଲା ଆମର ଲଜ୍ଜା;
କିଶୋର ମୁଁ ରାଣି,                ଢଳିଥିଲା ତବ
ସ୍ୱପ୍ନ-ମଧୁର ବକ୍ଷେ,
ଚପଳ ଚନ୍ଦ୍ର                ଲୁଚି ଲୁଚି ଗୃହ୍ନେଁ
ଲଜ୍ଜକଂପିତ ଚକ୍ଷେ !

ମଧୁ ଫଗୁଣର ରାତି,
ଅନ୍ତବାହ୍ୱତର ଆସିଥିଲା ଡାକ
ବିବାହର ବରଯାତ୍ରୀ !
ସେଦିନ ବିବାହ ନଈର କୂଳେ
ଚନ୍ଦ୍ରାଲୋକ ଓ ଗୁମେଲାର ତଳେ
କିଶୋରୀଏ ଏକ କିଶୋରର ଗଳେ
ବାହୁ ଦେଇଥିଲା ବାନ୍ଧି,
ମୃଦୁ-ଗୁଂଜନେ ଅଂତର ବେଦନ
ଧୀରେ ଯାଇଥିଲା ଛନ୍ଦି !

ଶଯ୍ୟା ଗୋ ଛାଡ଼ ଆଜ,
ଘୁମ୍ବରତର, ସଖି,— ବନେବନେ ଏ ଯେ
ଶଂଖ ଉଠିଛି ବାଜ !
ଏ ସିନା ଜନତା ଜାଣିବାର ଲାଗି
ବିବାହୋତ୍ସବ···ଯେତେ କାରସାଦି;
ମନ ଓ ମନର ବନ୍ଧ ସରିଥିଲା
· ବହୁ ଦିବସର ତଳେ,
ମାଦ୍ଦାର-ଗଳତା ମଧୁ-ଯାମିନୀର
ନଈର ଏକ କୂଳେ !!

—*O*—

ଢେଂକାନାଳ
୨୦-୧୦-୧୯୪୨

॥ ଝଡ଼ର ନୀଡ଼ ॥

ସଂଧାର ଛାଟରେଛାଟରେ ନଇଁଆସେ ବରଷା,
ନାହିଁ ଥଳକୂଳ ନାହିଁ ଭରସା ।
ପଶ୍ଚିମ ମେଘକୂଳେ ରଙ୍ଗ ଆଲୁଅ ଜଳେ
ଢକମିକ ଧୂପଛାଇ-ଫରଷା;
ଢଣେଢଣେ ଝରିଲାଣି ବରଷା !

କାନନ ଶ୍ୟାମଳଶିରେ ଅଂଧାର ଆସିଚ,
ମାଳଅଞ୍ଜନ କେବା ମାଖିଛୁ !
ବୁକେ ଜାଗିଉଠେ ଯଥା ଅଧଭୂଲ୍ ସପନ
ଢେସନ କରୁଣେ ପକ୍ଷୀ ଡାକୁଛି;
ପ୍ରାଣେ ପ୍ରାଣେ ଅଂଧାର ଆସିଛି !

କା'ର ଲାଗି ଅଭିସାର କଁପା ଉଦବେଗ ଗୋ,
କା' ଲାଗି ଉଠିଛୁ ନଭେ ମେଘ ଗୋ ?
କା'ଲାଗି ଚାଗଳନାଛ ଉଠିଛୁରେ କଥାକନ୍ଥ
କା' ଲାଗି ଏ ପବନର ବେଗ ଗୋ,
ଅଶ୍ରୁ ଝରାଏ କଆଁ ମେଘ ଗୋ ?

ଏସନ ଆକାଶ ତଳେ ଏପେ ଭଗ୍ନନଙ୍କରେ,
ଏକଲା ମୁଁ ଚଣ୍ଟନେବ ବାନ୍ଧରେ ।
ନାହିଁ କଛୁ ଉଦ୍ଦେଶ ଦଗହୀନ ନରୁଦ୍ଦେଶ
ନଭିଯିବ ଅଂଧାର ମହ୍ଲାରେ;
ଘଦ୍ରଆକାଶ···ଭଗ୍ନ-ନଙ୍କରେ ।

କାଶତଁଡ଼ୀପୁଲହାସେ ପଠା ଉଠେ ହସି ଗୋ,
କାହ୍ଲାଣୀ-ଯୁଗର ରାଜରୂପସୀ
ଧବଳ ସେ ଶେଯପାର କା'ର ପଥ ଅନୁସର
କାହାପାଇଁ ଉଜାଗରେ ଷୋଡ଼ଶୀ ?
କାହାଣୀ-ଯୁଗର ରାଜରୂପସୀ !

ଝାରଉପବନେ ଦିଶେ ଗ୍ରେଠଗ୍ରେଠ ଗାଆଁ ଗୋ,
କିଏ ଜାଣେ କିସ କା'ର ନାଆଁ ଗୋ ?
ନାରିକେଳ ବଣ ଫାଁକେ    କଳାମେଘ ସନ୍ଧିଁ ବାଁକେ
ସେଇଠାରେ ଏ ଜୀବନ ବନ୍ଧାଗୋ;
ଶୁଭ୍ର ଶ୍ୟାମଳ ଗ୍ରେଠ ଗାଆଁ ଗୋ !

ଝଡ଼ରେ ନାଉରି ଏଥି ଝଡ଼ ଘୋର ତରଣୀ,
ଅଂଧାରେ ଭରିଉଠେ ଧରଣୀ ।
ଏ ପଥେ ଯାଇଛି ଦୁଃଖେ    ଅଶ୍ରୁ-ଉଚ୍ଛଳ-ମୁଖେ
ସନ୍ତାନଦଳ ବର-ଜନମା;
ଦିଶିଲଣି ଶମଶାନ ସରଣୀ ।

ଆକାଶର ପଥେପଥେ ବାଦଲର ଭିଡ଼ ଗୋ,
ଉପ୍ରେ ଆରଁଭିଲଣି ଝଡ଼ଗୋ ।
ଏଇ ଶମଶାନ ଦହେ    ଯୋଗ ବା ସାଧଇ କିଏ
ପୁରାଣର ଈଶ୍ୱର ବଡ଼ ଗୋ;
ମୁଗ୍ଧ-ଆକାଶେ ନାଚେ ଝଡ଼ ଗୋ !

ଏଇ ପାଖ ବଟତଳେ ଭଡ଼ଭଡ଼ ତରଣୀ,
ଏଇପଥେ ଆସେ ମୋର ଘରଣୀ ।
ଅଂଧାର କସ କୁହେ   ଝିକମିକ ଏ ଆଲୁଏ
ନିରଜନ ଗାଏଁ କାଁଦେ ତରୁଣୀ;
ଭଡ଼ରେ ନାଉରି ଏଥି ତରଣୀ !

ରୁଦ୍ରମୂରତି ଧରି ବନ୍ଧୁ ଆସେ ନଭରେ,
ଝଟିକାର ବେଗ ନୂପୁରେଁ ସନ୍ଧି ରେ !
ଏ ଝଡ଼ ଆକାଶ ତଳେ   ବକ୍ଷେ ଅନଳ ଜଳେ
ଦୁରୁଦୁରୁ ଛାତି କାହା ପାଇଁରେ ?
ଆଜ ଆଶ୍ରୟ ତା'ର ଠାଇଁରେ ।...

ଆକାଶେ ଆକାଶେ ଆଜ ଝଂକାର କରଣୀ
ଭୁଲେଇ ନେଇଛି କିଏ ଘରଣୀ ?
ନିରଜନ ରାତି ତଳେ   ଗୋଟିଏ ପରାଣ ଜଳେ
ମୋ'ଲାଗି ଆକୁଳ କରି ଧରଣୀ,
କାନ୍ଦଇ ଚଂପକ-ବରଣୀ !!

ମୂର୍ଧ ବୁକୁର ଡକ ନୁହେଁ ଆଉ ସହ୍ବରେ,
ଅଂଧ ଆକୁଳ ସାଗ୍ର ମନ୍ଥିରେ ।
ନିଖିଳର ଅଭ୍ରସାଗ୍ର                ମତ୍ତ ପାଗଳ ଘ୍ରାଗ୍ର
ମାଡ଼ ଖୋଜପିବ ଏଇଠାଇଁ ରେ,
ରଖରଖ, ଯାଅନାହିଁ ବାହ୍ବରେ !

— ୦*୦ —

ବ. ପୁର,
ଢେଂକାନାଳ
୧୧-୯-୧୯୪୩

## ॥ ନବବଧୂ ॥

ବିବାହର ମଙ୍ଗଳବାଜଣା
ପ୍ରିୟଜନ କଳକୋଳାହଳେ,
ତମରେ ଯା ଆଣିଲ ସଜନ
ଅନ୍ତପୁରେ, ଘାବଛ ସରଳେ ?
ଆଜଠାରୁ ପୁଷ୍ପଶଯ୍ୟାସାଥୀ
ଜୀବନର ଗୋ ସହଧର୍ମିଣି !
ମତେ କଗୋ ନଦେବ ସେନେହ
ବୁଲୁଭସ ପ୍ରଣୟ କହନ ?

ଗୋ କୁମାରି ସରଳା ବାଳକା
        କଏ କଁପା ଛନ୍ଦଲ୍ କନ୍ଧତ,
ରକ୍ତସ୍ରାବୀ କଣ୍ଟକତଳରେ
        କୋମଳାଙ୍ଗୀ ଗୋଲାପର ଯୂଥ !
ମୁଗ୍ଧତବ ରୂପେ ମୁଇଁ ଭୋଳ
        ମଧୁର ସେ ନାମ ଧରି ଡାକେଁ,
ଲଜେ ଫୁଟେ ରଙ୍ଗିମା କପୋଳେ
        ଥିରପଦେ ଆସ୍ ଯେବେ ପାଖେ ।

ଜୀବନର ଜନ୍ମଜନ୍ମାନ୍ତରୁ
        ଥିଲ କବା ପରିଚୟ ଆମ,
ବିବାହବେଦୀର ହସ୍ତଗ୍ରନ୍ଥି
        ଆଜି ତାରେ କଲା ପୂର୍ଣ୍ଣକାମ ।
ତନୁମନ କରିଲା ଉନ୍ମାଦ
        ହସ୍ତର ସେ ଉଷ୍ମ ମଧୁସ୍ପର୍ଶ,
ବୁକେଦେଲା ଅମିୟ ପୀରତି
        ପ୍ରାଣେ ପ୍ରାଣେ ସୌରଭ ରଭସ ।

ଅବଜ୍ଞାତ କେଉଁ ଜନ୍ମପାରେ
ଗୋ ଉର୍ବଶୀ, ଅମର ନନ୍ଦନ !
କାହିଁ କେଉଁ ସୁଲକ୍ଷତ ହର୍ମ୍ୟ
ହୋଇଥିଲ ମୋହର ସଙ୍ଗିନ ?
ମୋ'ର ଶେଯେ ଫୁଟି ପୁଷ୍ପସମ
ମଉଳିଲ ଜରା ଖରତାପେ,
ଏ ଜନ୍ମର ପ୍ରଥମ ଲଗନେ
ମୋରେ ତେଣୁ ବରିନେଲ ଆପେ ?

ନଖିଳ ବିଶ୍ବର ଆଗୋ ନାରି,
କନ୍ୟା ପ୍ରିୟା ଭଗିନୀ ଜନନୀ !
ଅଦୃଶ୍ୟ ସେ କାହାର ଇଙ୍ଗିତେ
କି ଲଗନେ ଛୁଇଁଲ ଧରଣୀ ?
କନ୍ୟା ଥିଲ, ହୋଇଲ ଭଗିନୀ,
ଜନନୀକୁ କଲ କିବା ଆଶ,
ତେଣୁ ନେଲ ବରି ଏ ଦକ୍ଷିଣେ
ପ୍ରେୟସୀର ଗୋ ମୁଗ୍ଧ-ବିକାଶ !

ଗଣ୍ଡେ ତବ ଗୋଲାପ ଉଲୁଟେ
　　　ଓଷ୍ଠୁଥରେ ଦ୍ରାକ୍ଷାଫଳ ସମ,
ମୁଖେ ତବ ଉର୍ବଶୀର ଦୀପ୍ତି
　　　ଆଖେ ଆଖେ ସୁଧା ମନୋରମ ।
ଅଂଗୁଳ ବା ଚଂପକ-ସ୍ତବକ
　　　ବକ୍ଷେ ଭରୁ ଅମରର ଶିଖା,
ହାସ୍ୟେ ତବ ଫୁଟଇ ମଲ୍ଲିକା
　　　ପୃଷ୍ଠେ ଦୋଳେ ଦର୍ପିତ କବରୀ !

ମଧୁଶଯ୍ୟା କଠୋର—ପରୀକ୍ଷା
　　　ଗୋ କୁମାରୀ, ବରନେଲ କାଁଟା,
ଚିରଦୁଖୀ ଏ ପ୍ରଣୟୀ ପରେ
　　　ଅକାରଣ ଏତେ ଅନୁକଂପା !
ତା'ପରେ ତ ରହିଛି ସଂସାର
　　　ପରିବାର ଅଳ ଅରଚନା,
ସହିବକି ଗୋ ପାରିବ ଏ ଭାର
　　　ଅଙ୍ଗେ ବନ୍ଧି ଏସନ ମୂର୍ଚ୍ଛନା ?

ତଥାପି ଗୋ ପ୍ରିୟ ସହଚର,
ମୋରେ କାଁପା ଏଡ଼େ ଭଲପାଅ,
ମୋର ଆଶେ ଲୁହ ଢ଼ାଳ ନିତି
କିବା ଲୋଭେ ରଜନୀ ପୁହାଅ ?
ଜୀବନର ଅୟିଗୋ ରସମୟି !
ରାଣୀ, ସଖି, ହେ ମୋର ରୂପସି,
ଯୁଗେଯୁଗେ ପ୍ରଣୟୀ ମୁଁ ତବ
ଯୁଗେଯୁଗେ ତମେ ମୋ' ପ୍ରେୟସୀ ।

—*○*—

କଟକ
୧୫-୧୨-୧୯୪୩

## ॥ ଗାନ ଓ ଭାନ ॥

ଅଂଧାର ଢଣଢଗ ଆସୁଛ ମେଘ,
ଭଦର ବତାସେ ଆଜ ଦ୍ୱିତମ ବେଗ ।
ଥରଥର ତରୁଲତା
ଦୂବା କହଇ କଥା
ଏ ଶୀତ ଲଗନେ ମନ ମୋ ଉଦବେଗ,
ଦଣଦଗ ଅଂଧାର ଆସୁଛ ମେଘ !...

ନିର୍ଜନ ବଣଭୂଇଁ ମୁଁ ବଣବାଳା,
ବଣଫୁଲ ତୋଳି ବସି ଗୁଂଥେ ମାଳା ।
ବାଟବଣା କେଉଁ ପକ୍ଷୀ
ଉଡ଼ଯାଉଁ ଗଲ ଡାକ
'କାମସାର ବେଗି ତୋ'ର ନାଇଁଲେ ହେଳା,
ନିଜନ ମରବେ ଶୁଁଖି ଯା' ଲଗି ମାଳା ।'

କାହାଲାଗି, କାହାଲାଗି, ଆସିବ କିଏ ?
ଆଣ୍ଟେଲି ଯିବ ସତେ ଏ ମୋର ଦେହେ ?
ଯୁଗ ଯୁଗ ଉଜାଗର
ଅର୍ଘ୍ୟ ଯା' ଲାଗି ବର
ରଖିଲି ନୟନେ, ହୃଦେ ଆପେକ୍ଷି ସିଏ,
କା'ର ପାଶେ ନିବେଦିବି ଏ ମୋର ଦେହେ ?

କେଉଁ ଗିରିବନ ଡେଇଁ ଆସୁଚ ସାଥି,
ବରଷା ଶରତ ଶୀତ ନିଦାଘ ରାତି—
ବିତାଇଚ କେତେ ପଥେ
ମୁଁ ପୁଣି ବସିଚି ଏଥେ
ବରଷ ବରଷ ପ୍ରୀତି ଆସନ ପାତି,
ସତେକି ପାହିବ ଆଜି ସେ ଦୁଖରାତି ?

ଲତା କୋଳେକୋଳେ ଫୁଲ ଉଠିଲେ ଫୁଟି,
ମୁଗ୍ଧ-ସମୀର ଗଲା ସୁରଭି ଲୁଟି ।
ଗରଜଣୀ କଳାମେଘ
ଉଚ୍ଛ୍ୱସି ଗଲା ବେଗ
ବନେବନେ ବେଣୀ ତା'ର ପଡ଼ିଲା ଫିଟି,
ଶ୍ରୀପଦ—ପରଶେ ଗଲା ବନ୍ଧ ଛୁଟି !

ଏଡ଼େ ବଡ଼ ସୁଖ ମୁଁ ଗୋ ଧରିବ କାହିଁ,
ଲଭିଲିକ ଏଡ଼େ ଧନ ପରତେ ନାହିଁ !
କାହିଁ ସଂପଦ ମୋର
ଦେବ କବା ଉପହାର
ଆସନ ରଖିଛୁ ଯାଜ ହୃଦ ବିଛାଇ,
ତହୁଁ ବଳ ପ୍ରିୟ ମୋର ଆସନ କାହିଁ ?

ଦେଖ ମାଡ଼ିଆସେ ନଭ, ଶ୍ୟାମଳେବନ;
ଅର୍ଘ୍ୟ ମୋହର ଘେନ ହେ ନିଜଜନ !
ଏ ବରଷା ଝରଝରେ
ରସଘନ ଅଂତରେ
ନଅ ମତେ ଯହିଁ ଇଚ୍ଛା ହେ ପ୍ରିୟତମ,
ମୁହିଁ ଗାଏ ଗାନ···ତମେ ଧର ଗୋ ତାନ !!

—୦✳୦—

ବ. ପୁର
ଢେଂକାନାଳ
୯-୧୦-୧୯୪୩

## ॥ ବାସକସଜ୍ଜା ॥

କାର୍ତ୍ତିକ ଦୋର ଶୀତେ  ଲେଖିବ  କି ଚନ୍ଦ,
ଦେହ ମୋର ଥରଉଠେ ମିନ୍ଦ !
ଶିର୍ତଳେ ମାଣ୍ଡଉଠେ     ଶାଣିତ ଏ ତନୁତଟେ
ଯୌବନ ଶୋଣିତ ବଚନ୍ଦ,
ଛନଛନ ଚଂଚଳ  ଚତ୍ର  !

ଅଂଗନେ  ଦେଖ ମମ ଫୁଲେଫୁଲେ  ବନ୍ଧା
ଫୁଟିଛି ନବଢ଼  ନଶୀଗଂଧା ।
ମୁକ୍ତାକଣିକା ପରି       ନୀହାର ପଡ଼ିଚ ଝର
ଦୂବାରେ ଦୂବାରେ ଛଂଦା,
ଫୁଟିଲଣି ଏ ରଜନୀଗଂଧା  !

ବଂକମ ଶଶୀ ହସେ ବଲବଣେ ଯୋହାଗି,
ଏ ଗୀତ ଲେଖିବ ଆଜ କା'ଲଗି ?
ନାଗିନଶି ବସି ଝ୍ରୂରେ ପ୍ରିୟତମ ନାହିଁ ଘୁରେ
ଶୂନ୍ୟ-ଶୟନ ମମ ଡା'ଲଗି
କ ଗୀତ ଲେଖିବ···ଆଜ କ'ଲଗି ?

ଅର୍ଦ୍ଧନଶୀଥେ ବୃଥା ପଥଗୃଲେ ଯାତ୍ରୀ,
ବ୍ୟାପିଅଛୁ ଜୋଛନାର ଦ୍ୱନି !
ସ୍ତବ୍ଧ ବେଣୁର ବନେ ଛନଛନ ଉନ୍ମନେ
କେ' ଡାକଇ ଡେଜ ଡେଜ ଆର୍ତ୍ତି,
ବ୍ୟାକୁଳ ବକଳ ଅଭିଯାତ୍ରୀ !

ସକଳ ଜୀବନ ଆଜ ପୂର୍ଣ୍ଣ ଭରପୂର,
ଏକଲ ହାଇରେ ମରେ ବଧୁର !
ବଣ୍ଣ, ଏ ମଧୁଦ୍ରବ କଣିକେ ଗୃହ୍ନଛୁ ପଣ୍ଡ
ରଚନା ମୋ', କଣ୍ଠ ତୃଷାତୁର;
ପୂଲ୍ଲନ ପୂଲ୍ଲନ ପାତ୍ର !

କାଳିନ୍ଦୀ ଜଳ ନୀଳ କାଚ ସମ ସ୍ନିଗ୍ଧ
ପହଁରଇ ଚନ୍ଦ୍ରିକା ମୁଗ୍ଧ !
ବୃଷଭାନୁଜେମା ଆଳେ ନିଶୀଥପ୍ରଦୀପ ଜଳେ
ଆଜି ବ ବଧୂର ଅନ୍ତ କ୍ଷୁବ୍ଧ;
ପିଆସେ ରମଣୀ ଫେରେ ଲୁବ୍ଧ !

ମଥୁରାର ପୁରେପୁରେ · ଲାଗେ ଉତ୍ସବରେ
ଓଠେ ଓଠେ ଚୁମ୍ବନ ଆସବ !
କାହାର ଦରବ କାହିଁ ନଠୁର ରତ୍ନାଳ ପାଇଁ
କା'ର ଗଳାମାଳା କଲ୍ ଗରବ ?
ଓଠେ ଜାଗେ ଚୁମ୍ବନ ଆସବ !

ବ୍ୟର୍ଥ ଶୟନ ମମ ବ୍ୟର୍ଥ ସପନ ଗୋ,
ତନ୍ଦ୍ରାରେ ନମିଳେ ମୋ' ନୟନ !
ସ୍ତବ୍ଧ ବୃନ୍ଦାବନ ସୁସୁପ୍ତ ପୁରଜନ
ବେଳୁଁ ବେଳ ନିର୍ଜନ ଅୟନ,
କଣ୍ଟକ ଲାଗେ ଫୁଲ-ଶୟନ !!

ଋହାଁ ନନ୍ଦଆସେ ଫାଗ···ସରଆସେ ଶାନ୍ତ ଗୋ,
ନ ଆସିଲା ଜୀବନର ସାଥୀ ଗୋ !
ଆକାଶୁଁ ଗଳେଣି ଲୁହ   ତାରାଫୁଲ ପୁଟପୁଟ
ବହିଲାଣି ବାଆ ପରଭାଷ ଗୋ,
ଆଜ କି ଆସିବ ପ୍ରିୟସାଥୀ ଗୋ ?

ଛୁଟେନାଲିଁ ଗଉରବ···ମିଟେନାଲିଁ ତୃଷାରେ,
ବୃଥା ଝୁରମରୁ ଆଡ଼ରୁଷାରେ !
ଫିଙ୍ଗ ଏ ତନୁସାଜ   ଫିଙ୍ଗ କୁସୁମଶେଯ
ଫିଟାଅ କବରୀ···କାନଭୂଷାରେ,
ଯୁଗେଯୁଗେ ମିଟେନାଲିଁ ତୃଷାରେ !!



କଟକ
୧୧-୧୨-୧୯୪୫

## ॥ ଆଷାଢ଼-ଆହ୍ୱାନ ॥

ଆଷାଢେ, ସଜନି, ଗରଜଇ ଆଜି ମେଘ ଗୋ
ରସଭରେ ଘନ ଘନଘନ ଲୁହ ଢାଳଇ···;
କଳାମେଘ ତଳେ ବତାସ ଚଳଇ ବେଗ ଗୋ,
ଆର୍ଦ୍ର-ରଜନୀ କୋଳେ ମହାଭୟ ଖେଳଇ !

ନିସ୍ତବ୍ଧ ଜନନ ଅଂଧାର-କଳା-ରଜନୀ,
ଦିଗ ଚୁମି ଘୋର ନୀରଦ ଘୋଟିଛି ଗଗନ,
ମଂଦ୍ର ଆରବ ଚମକାଇ ଦିଏ ଧରଣୀ
ବିଧୁର ବିଶ୍ୱ ପ୍ରେମରସେ ହୁଏ ମଗନ ।

ବରଷାର ଧାରା ଝରେ ଅବିରାମ ଅଥୟ
ମଂଜୁ ଶ୍ୟାମଳ ଦୂର୍ବା ଚଢ଼ଇ ନଇଁ ଗୋ,
ବାହାର ଜଗତ ଆୟୋଜନ କରେ ପ୍ରଳୟ
ଉଚ୍ଛ୍ୱସି ଉଠେ ଅଂତର ରନ୍ଧ୍ରରନ୍ଧ୍ର ଗୋ !

କଦଂବ ଫୁଲ ଚହଟାଏ ଆଜି ବାସ ଗୋ,
ଭିଜାପବନରେ ବହେ ଭୁରୁଭୁରୁ ଗଂଧ,
ଦୂର ଘନ କୋଳେ ବିଦୁ-ଛନଛନ-ହାସ ଗୋ,
ପୀରତି ଯାତନା କରିଦିଏ ମୋତେ ଅଂଧ !

ମନର ଆଜି ଏ ନୂଆ ଉତ୍ସାହେ ସଜନି,
ମଂଜୁଳ ତବ କବରୀ ସାଜିବି କୁସୁମେ;
ରକ୍ତ-ସୁରସରେ ରଞ୍ଜିତ କରି ରଜନୀ
ବନ୍ଧୁ ନିଃଶ୍ୱାସ ରସଙ୍ଗରେ ଅତି ଉଷୁମେ !

ବରଷକ ପରେ ଆସିଚ ଆଷାଢ଼-ରଜନୀ
ଗିରିଗାଲେ ମେଘ ଚୁଂବନ ଦିଏ ନବଢଙ୍ଗେ,
ଅଂତରେ ମୋର ପ୍ରଣୟ-ପିପାସା ସଜନି !
ପୂର୍ଣ୍ଣକରଗୋ ତନୁ ଭିଡ଼ି ମୋ'ର ଶଙ୍କରେ ।

ଘରଛାଡ଼ି ଆସ ଅଭିସାରେ ସୁନାବରଣି !
ଆହ୍ୱାନ କ'ରେ କବି ମୁଁ ଅଧୀରବକ୍ଷେ;
ପଦପାତେ ତବ ଫୁଲ ଉଠୁ ଏଇ ସରଣୀ,
ପଦ୍ମ-ପଲ୍ଲବ-ଚରଣ ପଡ଼ୁ ମୋ' କକ୍ଷେ ।

ବର୍ଷାର ବେଗ ବଢ଼େ ବେଳୁଁ ଦେଳ ଅଥୟ,
ଅଂତର ଅଥୟ ବୁକୁତଳ, ଗୃହ-ଦେହାନ୍ତରେ !
ପ୍ରୀତି ଆବେଗରେ ଥରିଉଠେ ଏ ମୋ' ହୃଦୟ
ପାଶେ ନାହିଁ ତମେ ସଜନି, ଡାକିବି କାହାରେ,?

ଦୂରେ ଆଜି ସନ୍ଧ୍ୟା ତରୁଣ ବୟସେ ମୁଁ ଏକାକୀ,
ଦୂରେ ତମେ କାହିଁ ଦେଖୁଥିବ ମେଘ-ଚଶାଖ ଗୋ !
ପ୍ରାଣେପ୍ରାଣେ ତମେ ଖୋଜୁନାହିଁ ପ୍ରାଣସଖା କି ?
ମୁଁ କି ଖୋଜୁନାହିଁ ସଂଗିନୀ-ମନୋଲୋଭା ଗୋ !

ଆଜି ରସଘନ ରଜନୀ ହୋଇଛି ଉଦୟ...
ଆସଗୋ ଖୋଜିବା ଗୋପନ ପୀରତି-ରତନ,
ସବୁ ଭୁଲି ଆମେ ହୃଦେ ସଁପିବା ହୃଦୟ...
ପ୍ରୀତି-ସୁଗଂଧେ ମଂଥି ଗଗନ ପବନ !

ଆସ ସଖି, ଆଜି ପୂର୍ଣ୍ଣ କରିବା ବାସନା,
ଆଷାଢ଼ ବର୍ଷା-ରଜନୀରେ କରେଁ ମିନତି;
ଘର ତେଜି ଆଜି ବଣପଥେ ଚାଲି ଆସନା !
ତରଳେ ଶୁଣିବା ନୂପୁର ବରଷା ତନନ୍ତି !!

—o*o—

ଢେଂକାନାଳ
୭-୭-୧୯୫୧

## ॥ ରାଜପଥ ॥

ଅନାଦି ଅଗଣ ଅସୀମ ଯୁଗର
ନିଂଦିତ ରାଜପଥ !
କା'ଲାଗି ସରମେ ମସ୍ତକ ଦେଲ ନଇଁ ?
କା'ଲାଗି କରିଲ ଏ ନିଖିଳତନୁ
ଚିରଧୂଳି-ଧୂସରିତ
ଲକ୍ଷବୁକୁର ଯକ୍ଷବେଦନା ବହି ?

ସୃଷ୍ଟିର ଦିନୁଁ ଉତ୍ଥାନେ ପଡ଼ି
ଧରଣୀର ଏକଠାଏଁ
କେବା ଅଭିମାନେ ଗୋପନେ ସହିଲ ସବୁ ?
ଅକୃତଜ୍ଞ ଏ ମାନବଜାତିର
କଲ କେବା ପ୍ରତିରୋଧ,
କଡ଼ ପାଲଟିଲ ଚିତ୍ତ କି ଅନୁଭବୁଁ ?

ଯୁଗଯୁଗ ଧରି ମୁକ୍ତିସଇନ
ଗରଜି ସିଂହ ନାଦେ
ଗଲେ କଂପାଇ ରୁକ୍ଷ-ମାଟିର ଘୁଙ୍ଗି,
ହତ୍ୟା, ଖୁଣ୍ଟୀ ଓ ବ୍ୟଭିଚାରର ମଦେ
କଳଂକିତ ଏ ପଥ
ସାକ୍ଷୀ ତାହାର ଅଗଣ କୃଷ୍ଣରାତି !

ସେ ସବୁରୁ ଆଜ ଚରି ଫେରାଏ
ନିଖିଳ-ଶିଳ୍ପୀ ମନ,
କି ପାଏ ତାହାର ଦୁନିଆର ହାନିଲାଭେ,
କଳ୍ପଲୋକର ସଂଗିନୀ କାହ୍ନି
କଲି ପଦ ଅରପଣ
ତମ ବୁକେ,ସାଥି,ନିଅ ମତେ ସେଇଠାବେ ।

ବଂଧୁହେ ତବ ବୁକୁପରେ ସାଜେ
ପଦଚିହ୍ନ ଶତଶତ
ତା' ସାଥେ ଝଲସେ ଦୁଇଟି କୋମଳ ଛବି,
ଅଳସ-ପଦର ଲାଂଛିତ ତବ
ରୁକ୍ଷ ନୀରସ ବୁକୁ—
ତଳେ ରଚିନିକ ପୀରତି ପୀୟୂଷ ସୁଧା ?

ସେଦିନ ଅଳସ-ସଂଧ୍ୟା ଆକାଶେ
କଅଁଳେ ଆସିଲ୍ ନଇଁ
ଆଷାଢ଼ କବରୀ ଫିଟିଗଲା ମଥାପରେ,
ନବତରୁଣୀର ଅଭିସାର-ଛନ
ମୁଗ୍‌ଧ-ଶଙ୍କିତ-ଚିତ
ଅଳକ୍ତ ରାଗେ ଥର ଉଠିନକି ଥରେ ?

ଜୋଛ୍‌ନା-ରଜନୀ ହସ ତଳେ ସଖୀ,
ମନେପଡ଼େ କିଗୋ ତବ
ଆସିଲା ସେଦିନ ପ୍ରିୟତମା ମମ ପାଶେ,
ଦୁରୁଦୁରୁ ବୁକେ ମୁକ୍ତକବରୀ
ଚରମେ ଚଢ଼ଇ ଫିଟି
ପ୍ରୀତି-ପିପାସିନୀ ପାଗଳିନୀ ମୋର ଆଶେ ।

ବୁକୁପରେ ତବ ଲକ୍ଷପଦର
କରଣୀ ଲକ୍ଷ୍ୟହୀନ
ଝଙ୍କାର ଏ ମୋ’ ପଦମୂଳୁଁ ଦଗଲାଗେ;
ସେ ସବୁରେ ତେଜ ଦୁଇଟି ପଦର
ସନ୍ଧାନୀ ମୋର ଆଖି
ରଂଜିତ ସଂହା ଶୋଣିତ-ଅଳତା-ରାଗେ !

ଏଇ ପଥଘରେ ପ୍ରିୟତମା ମମ
ଚରଣ ଗୁଳଇ ନିତି
ନିର୍ଜୀବରେଣୁ ଚମକି ଉଠଇ ଜାଇ,
ରେଣୁତୁଲେ ମିଶି ବଣନେବି ମୁଁ ଗୋ
ମୁଗ୍ଧ ସେ ଅନୁଭବ
ବକ୍ଷେ ବହିବ ଗୁରୁ-ଲାଂଛନ ଦୁଇ !

ପ୍ରିୟା ନିଃଶ୍ୱାସେ ସୁରଭିତ ପଥ
ବକ୍ଷ ଉଠଇ ମାତି
ପାଶେ ଘାସଫୁଲ ଅଧୀରେ ପଡ଼ଇ ଝରି,
ମୋରପଥକୁଁ ଆହେ ସୁଭଗ-ସରଣି,
ପ୍ରଣତି ମୋହରି ଦେନି···
ପ୍ରିୟା ଲାଗି ବୁକୁ ରଖିବ କୋମଳ କରି !

ଦୂରମେଘଲୋକେ ଜହ୍ନରଶ୍ମି
ପାଶ୍ୱେ ଗୋଲାପବଣ,
ନିର୍ଜୀବ ପଥ ! ସଜୀବ ହୁଅହେ ଆଜ,
ଆମ୍ର କାନନେ ଡାକିବ ପକ୍ଷୀ
ରଜନୀ-ଦ୍ୱି ପ୍ରହରେ
ବୁକୁପରେ ତବ ନୂପୁର ଉଠିବ ବାଜ !

ମୁଁ ବୁଝେଁ ଜଗତେ ପଥ ତବ ବୁଜେ
ଦୁଇଟି କୋମଳ-ପଦ
ଉଚ୍ଛନ୍ନ ସଦା ଖୋଜ ଅଭିସାର-ରାତି,
ପ୍ରିୟତମା ମୂର୍ଖୁଁ ଦରଧା-ପ୍ରାଣର
ପ୍ରୀତିକଥା ଦୁଇପଦ,
ତା'ପରେ ନଡ଼ିଲେ ନଭୁ ଏ ଜୀବନବର୍ତ୍ତି ।

—*○*—

ବିଦ୍ୟାଧରପୁର
୧୫-୧୦-୧୯୪୩

## ॥ ହଜିଗଲ୍ କାହିଁ ॥

ସେ କେଉଁ ଗାଆଁର ଏକ ଲାଜକୁଳୀ ଝିଅ ଗୋ,
ମନେପଡ଼େ ଦିନେ ଏଥି ଢାଳଥିଲ୍ ବନ୍ଧ ଗୋ !
ଢଳଢଳ ଯଉବନେ
ଛଳଛଳ ତନୁମନେ
ଅଧର ମଦିର ରସେ ବଞ୍ଛି ପିନ୍ଧ ଗୋ,
ମନେପଡ଼େ ଅଳଅଳୀ ଲାଜକୁଳୀ ଝିଅ ଗୋ !

ଝିଣ୍ଟିବଣ୍ଟି ତା ନାମ ଡାକ ନାମ ଝରଣା···
ସୁଷମାର ଶେଷସୀମା କନକତ ବରଣା ।
ବରତୁଳ ମନଲୋଭା
ଉରଜ ଜଘନ ଶୋଭା
ଟଣାଟଣା ଭ୍ରୂତଳ ଛଣା-ସୁଧା-ଭରଣା,
ହରିଣୀ-ନୟନା ଚାରୁ···ହଂସୁଲୀ-ଚରଣା ।

ସେଦିନର ସଂଧ୍ୟା ମନେପଡ଼େ ସାଥିରେ
ଜୋଛନାର ସାଥେ ଖୁରୁବାଆ ଥିଲା ମାଡରେ
ଚଂଦ୍ରିକା ଢଳଢଳ
ନିର୍ଝର କଳକଳ
ଥଳଥଳ ନୀଳଜଳ ଛଳଛଳ ସ୍ରୋତରେ,
ସେଦିନର ସଂଧ୍ୟା ମନେପଡ଼େ ସାଥିରେ !

ଚଞ୍ଚଳ ଗୃହପଦେ ଝୁଂଟିଆ ବଜାଇ
କଜଳ-କବରୀ ପ୍ରାଣ ବଳୁଳରେ ସଜାଇ
ଆମ୍ବ ବନର ଧାରେ
ଆସେ ଶୁଭ ଅଭିସାରେ
କଅଁଳ ଅଧରପୁଟେ ଅଧର ମୋ' ମଜାଇ,
ଚଞ୍ଚଳ ଗୃହପଦେ ଝୁଂଟିଆ ବଜାଇ !

ଫୁଲ ପରି କଅଁଳ ଶୁଭ୍ର ତା' ତନୁଗୋ,
ବାରେକ ପରଶେ ମୋ'ର ନଯାଏତ ମନୁଗୋ !
ବକ୍ଷ-କମଳ ତାର
ବୁକେ ଲାଗୁଁ ଦୁର୍ବାର
ଶୀତ୍କାରେ ପ୍ରାଣପୁରେ ନାଚିଲା ଅତନୁ ଗୋ,
ଫୁଲ ପରି କଅଁଳ ଶୁଭ୍ର ତା' ତନୁଗୋ !

ପାଟର ବସନ ତା'ର ମଳୟରେ ଉଡ଼ାଇ
ଶ୍ରୀଅଙ୍ଗ ପରିମଳ ଦିଗେଦିଗେ ଛଡ଼ାଇ
ଅଳକାର ଗନ୍ଧ .
ଆଣିଦେଲା ରାଣୀ ସତ
ନନ୍ଦନ ସେ' ଚନ୍ଦ୍ରଶିଖା ଶଯ୍ୟାରେ ଗୋ' ଜଡ଼ାଇ,
ପାଟର ବସନ ଶ୍ଵରୁ-ମଳୟରେ ଉଡ଼ାଇ ।

ସେଦିନର ସନ୍ଧ୍ୟା ସେଦିନ ରଜନୀ ଗୋ,
ଗଲା କାହିଁ ହାଇରେ ସେଦିନ ସଜନୀଗୋ,
ସେ ତ ଆଜ ଦୂରେଦୂରେ
କା'ର ଲାଗି ସତେ ଝୁରେ
ଆଉ କା'ର ଶଯ୍ୟାରେ ଶୃଙ୍ଗାର-ସୃଜନୀ,
ହଜିଗଲା କାହିଁରେ କେବେ ସେଇ ରଜନୀ ?-!

—*O*—

ବ: ପୁର,
୨୮-୫-୧୯୪୭

## ॥ ସହପାଠିନୀ ॥

ମୋ’ ସହପାଠିନୀ ସୁକୁମାରୀ ସାର୍ଥୀ ଲଳିତା !
ଅପରୂପ ରୂପବନ୍ତୀ ଗୋ !
କରୁଣକୋମଳ କଟାକ୍ଷହାଣି ନେସ କମଳକୁଁ ସଞ୍ଚ ଟଗା,
ଜାଳଦେଲ ମେପ୍ରବଳତା ।···

ଅଂତରତଳ କରି ଛଳଛଳ
କେ ଯାଚିଲ୍ ସଖି, ତମରେ
ଫଗୁ-ଫଗୁଣର ଅର୍ଘ୍ୟ;
ପାଟଳ-ଗଗନେ ନନ୍ଦତ କରି
ଶୋଣିତ ଫୁଟଇ ଅଧରେ,
ଚରଣ ଚୁମଇ କୃଷ୍ଣ-କବରୀ ଦୈର୍ଘ୍ୟ !

ପଦ୍ମ-ବଦନ  ଶୋଭା ଅନୁପମ
ଟୁଳୁଟୁଳୁ  ନାଲି  ଓଠପୁଟ
ନୟନ ଶରେ ସଲଜରେ ଲଜ ସଲରେ, .
କୋଟି  ଫୁଲବାଣ ଚରଣରେ କଏ
ବାଂଧିଲା  କରି  ଏକଜୁଟ
ତମଲାଗି ପ୍ରିୟେ  ତମଲାଗି ମଧୁ-ମଂଚରେ !

କୋଟି ମନସିଜ ବୁକୁ ଛଳଛଳ
ମଂଜୁଳ  ମଧୁ  ଗୌରବେ
କଳାଂଶାଢ଼ୀ ତଳେ ସ୍ପର୍ଦ୍ଧିତ ବୁକୁ ସ୍ପନ୍ଦନ ।
ତନୁ ଗୌରବ ସୁବାସ ହରଇ
ଗୁରୁ  ଚଂପକ  ସୌରଭେ
ସୁନ୍ଦର ! ଆଗୋ, ଏକାକେ ନକର ବଂଚନ !

ପ୍ରତି ପଦପାତେ ପଦ୍ମ ଫୁଟାଇ ସଙ୍ଗିନ !
ହାସ୍ୟେ ଫୁଟାଇ କଥା କେତକୀର ଛଂଦ,
ଅଭିନବ ଶୁଭ୍ର ଶୃଂଗାର ରସେ ରଂଗିନ !
ଭାଂଗିଦେଲ ମୋ' ଧୈର୍ଯ୍ୟର ସେତୁବଂଧ !

ହାଇରେ ବିଧାତା ହୁଅ ନର୍ମମ ନଦୀକୂଳ
ବ୍ୟବଧାନ ରଚେ ଶତ-ଶଙ୍ଖବର୍ଣ୍ଣ ଝାଣି ଗୋ,
ତମେ ସେଇପାରେ···କାନ୍ଦେ ଆତୁରେ—
ଚକ୍ରବାକ ମୁଁ ଏଇକୂଳ,
ମଧ୍ୟେ ବହୁଛି ଭାଦରର ନଈପାଣି ଗୋ !

—✳○✳—

କଟକ
୧୯୪୭

## ।। ବର୍ଷାଭିସାର ।।

ଆଜି ବରଷା-ବଧୂର ରଜନୀ !
ନବନୀଳ ମେଘେ ବାୟୁ-ସଙ୍ଗର
ଝରଝର ପଡ଼େ ମୁଗ୍ଧ-ଆସାର
ଥରଥର ଉଠେ ଦାମିନୀ ଝଲକ
ଡର ଡର ଯାଅ ସଜନି !
ଆକୁଳା କୁମାରୀ ! ବରନଅ ଗୁରୁ—
ପ୍ରୀତି ଅଭିସାର ରଜନୀ ।

ଏଇ ପଥ ପରେ ଆସୁ ଆସୁ ତମେ
ଦେଖିଲକି ମୋର ଭଗିନୀ ?
ଦେଖିଲକି ତା'ର ସହୋଦର ଚାରଣ
ବରଷା-ବଧୂର-ବପୁକ-ବଡାସେ
ଘର ଛାଡ଼ି ଯେବେ ଆସେ ପଳାଇ
ତା'ର କଇଶୋର ସଂଗିନୀ ;
ପଥପରେ ଯେବେ ଆସୁଥିଲ ରାଣି !
ଦେଖିନାହଁ ମୋ'ର ଭଗିନୀ ?

ଗାଆଁ ପଥେ ପଥେ ବରଷା ଯାମିନୀ
ଅଂଧାରେ ଥିବ ଭିଡ଼ ଗୋ,
ଲୁଚି ଲୁଚି କେମନ୍ତେ ଆସିଲ ଭବନ ଛାଡ଼ି ଗୋ ?
ଆସିଲକି ଯେବେ ପଡ଼ିଥିଲେ ଶୋଇ
କ୍ଲାଂତ-କରମ ମାଆ ବାପା ଭାଇ
ବଂଦ ଥିଲା କି ଦୁଆର କପାଟ
ଶବ୍ଦ-ବିହୀନ ଗାଆଁ'ର ?
ପଥେ ପଥେ ରାଣି, ରସ ଢାଳୁଥିଲା
ଭାଦର ଆଦ୍ୟ-ଆସାର !

ଭଗିନୀର କଥା ପଚ୍ଛରିଲ କିଆଁ
ଜାଣନା ?
ଦୁଷ୍ଟ ସେ ଥରେ କହିଲ ହସି…
"ରଂଗରେ ଆମ
ନୂଆବୋହୂ କରି ଆଣନା !"
ହସି ଉଠିଲେ ସେ ମଥା ଖୁଣ୍ଡି ଥାଇ
ସରମ-ଫୁଲକେ ଶାଳିଲ ମୁଁ ଚୁଇଁ
ଅଧୀରେ କହିଲ ଅଧର ଥରାଇ
ରଂଗ ଡମକୁ ଭଲପାଏ ଭାଇ,
ମିଛ କହୁନ ମୁଁ, ଜାଣନା !"
ଶାଂତା ସରଳା ଭଗିନୀଟି ମୋର
ସାମାନ୍ୟ ତା'ରେ ମଣନା !…

ଆସ ଆସ ସଖି ଏଇ କୁଂଜରେ
ଅଂଧାର ଏଥି ଘନି ଗୋ,
ପଲ୍ଲବ ଘନ … ନ ପଡ଼େ ବରଷା ବାରି ତଗୋ !
ଘନବନ ପରେ ଶୁଣ ସଞ୍ଚର
ପବନ ତୋଳଇ କଳ ମର୍ମର
ଦେଖ୍ ବେଳ ବଢ଼େ ବର୍ଷାର ଝର
ବଢ଼ି ବଢ଼ି ଆସେ ନଈ ରେ,
ଶୀତ-କଂପିତା କପୋତ-କୁମାରୀ !
କୋଳ କରନିଏଁ ସହି ରେ !

କଦଂବ ଫୁଲ ଖୋସିଦିଏଁ ଆସ
କୁଂଚିତ-ଘନ-କବରୀ,
ଏ ଯେ ସିକ୍ତବସନ ! ଫେଡ଼ିଦିଅ ଭରା
ରଖନା ଅଂଗେ ଆବରି ।
ଏତେ ବହୁରୂପ ରଖିଥିଲ ରାଣି,
କାହାଲାଗି ସଖି, କହ-କଲ୍ୟାଣି !
ଅମିୟ ଅଧରେ ଫୁଟୁ ପିକବାଣୀ
ଚଂପକ-ସୁନା-ବରଣି !
ଲାଜ ତେଜ ସଖି ! ଆଜିର ମଧୁର ରଜନୀ !

ନିତି ନିତି ଏଇ ଜଳଘାଟେ ଆମେ
ଆସିଥିଲେଁ ଯେତେ ସଜନି,
ଚାହିଁଥିଲେଁ କେବେ ଏସନ ମଧୁର-ରଜନୀ ?
ତମେ ଥାଅ ଜଳରେ ମୋ' ଭଗିନୀ ପାଶେ
ଜଳ-କୌତୁକେ ସିନାନ ସକାଶେ···
ମୁଁ ଯିବେଁ ପୂଜନୁଁ ଫେରାବାଟେ ତବ
ସହୋଦର ପାଶେ ରହି ଗୋ,
ଏଇ ଜଳଘାଟେ ଏମନ ରଜନୀ
ଚାହିଁଥିଲେଁ କେବେ ସହି ଗୋ ?

ଏତେଦିନ ପରେ ମିଳନ···ମିଳନ
କପୋତ-ବିଳାପ ତୁଟାଇ,
ଭାଦ୍ରବ ଏଇ ଶାଟଫୁଲ ସମ
ଅଂତର-ଫୁଲ ଫୁଟାଇ !
ପିଅପିଅ ପ୍ରିୟ ତନୁମନ ଭରି
ପୀରତି-ପୀୟୂଷ ନିଃଶେଷ କରି
ଆଉଟିକେ ମୋ'ରେ ରଖ ଭିଡ଼ି ଧରି
ଓଠେ ଓଠେ ମଧୁ ଲୁଟାଇ !
ବହୁଦିନ ପରେ ଆସିଛ ସଜନି !
ଅଂତର-ଫୁଲ ଫୁଟାଇ !···

—*○*—

କଟକ
୨୮-୧୨-୧୯୪୫

## ॥ ବିରହ-ବ୍ୟଥା ॥

ତମେତ ବୁଣିଲ ତମେତ ବୁଣିଲ ପ୍ରିୟ ଗୋ
ଅଂତରେ ମମ ପୀରତି-ମଧୁର ବୀଜ,
ତମେତ ଢାଳିଲ ଢାଳିଲ ଅମିୟ-ରସ ଗୋ
ଗଂଡ଼େ ମୋହର ବୋଳଦେଇ କବା ଟିକ !

ବାହୁ ଲତିକାର ଆଶ୍ଳେଷେ ଭିଡ଼ି ନିବିଡ଼େ
ତମେ ମୋ’ ପରାଣେ ଭରିଦେଲ ମଧୁ ଛଂଦ
ଜୋଛନା-ରାତିର ସେକଥା ପଡ଼ୁଛି ମନେ ଗୋ
ମଥାପରେ ଥିଲା କୁଆଁଙ୍କର ଗୁରୁଗଂଦ !

ଚଂଚଳ-ଭୃଙ୍ଗ-ଅଂଗ-ଲତିକା ପାଶେ ଗୋ
ଭିଡ଼ିଲ ମୋହରେ ରଖିଛି ପୀରତି-ପଦ୍ୟ,
ତବ ପରଶନେ ଧନ୍ୟ ହେଲା ଏ ତନୁମନ
ରହିଲ ତବୁଙ୍କୁ ପାନକର ସୁଧା-ପଦ୍ୟ !

କାହିଁଗଲା ଆଜି ଜୀବନର ପ୍ରିୟସାଥି ଗୋ !
କାହିଁଗଲା ମୋର ଲକ୍ଷ-ଯୋଜନ-ଗଂଧା !
କିଏ ହରିନେଲା ମଣିମାଳା ମୋର ଗୋପନେ
ହରିନେଲା କିଏ ସେ କୋମଳ ବାହୁବଂଧା ??

— ୨ —

ତନୁ ପଞ୍ଜରେ ହୃଦସରେ ମଳି
ଝୁରଇ ବକୁଳ ମାଦକତା,
ରଂଗ ଅଧରେ ବୋଳା ଯେତେ ମଧୁ
କିଏ ବୁଝେ ତା'ର ମଧୁରତା ?

କଳନା କେ କରେ ସୁଧୂରୁ ଆଖିର
କୋମଳ ପୀରତି ଆତୁରତା,
ପଦ୍ମ-ବଦନେ ଠୁଳ ଯେତେ ଶୋଭା
କିଏ ମାପେ ତା'ର ଗଭୀରତା ?

ମନେପଡ଼େ ମୋର 'ଜନମେଜୟ'ର
'ପାରିଜାତ' ଶିର ସୁନା-ଶିଖା,
ମନେପଡ଼େ ଖଣ୍ଡ-ବହୁପାର ମାରେ
ପଡ଼ୁଥିଲା ଯେବେ ସୁଧା ଝର !

ମନେପଡ଼େ ସେଇ ସୁନାର ଗୋଧୂଳି
ତମ ଗାଲ ଉପରେ ଚୁମ ବୋଳି,
ମନେପଡ଼େ କ୍ଷୀଣ-କୋମଳ କନ୍ଦନ···
ଛଳଛଳ ଝରୁ ଆଖିଡ଼ୋଳେ !

ମନେପଡ଼େ ଧନ ନୟନ ଭିତର
ଅଳପ ଅଳପ ଉନ୍ମତ୍ତ,
ମନେପଡ଼େ କମ-ନୟନ-କୋଣର
ସୁନା-ଶିଖ-ଚୂନା ମଧୁ-ରତ !

ସବୁ ମନେପଡ଼େ ପ୍ରିୟ୍ମ ଦେଖା ଉପର
ସବୁ ମନେପଡ଼େ ଅକାରଣ,
ଅନ୍ତରେ ଆଜି ଯତରେ ଖୋଲି
ବରଦ୍ଧ ଭିତର ଲୁହ-ବାଣ !

ସତେ କି ଭୁଲିଲ ପ୍ରିୟତମ ମମ
ସତେ କି ଭୁଲିଲ ସୁନ୍ଦର,
ମଧୁ-ଶରତର ରଜନୀ-ଛନ୍ଦ
ବଧୂ-ଗୀରତର ଦ୍ବନ୍ଦର !

ଝୁଲିଲ କ ଯବୁ ଆଖି ପିଞ୍ଜୁଳାରେ
ଏତେ ରଜନୀର ପ୍ରୀତି-ସାକ୍ଷୀ,
ଆମ୍ଭର ଯେ ଥିଲା ବୁକୁର ସ୍ୱପ୍ନ
ଆମ୍ଭର ମିଳନ ଥିଲା ବାଣୀ !

—୩—

ଶରତର ସେଇ ହଜିଲା ରଜନୀ
ଖୋଜି ବୁଲେ ଆଜ ତନୁମନ,
ଖୋଜିବୁଲେ ତମ ବୁକୁର ପୀରତି
ଖୋଜିବୁଲେ ତବ ଯଉବନ !

ସୁଦୂରେ ରହିଲ ଜୀବନ-ବନ୍ଧୁ !
ମନେ ବହି ଗୁରୁ ଅଭିମାନ,
ଚଇତାଳି ସତେ ଆତୁର କରୁଛି
ତମ ମଧୁବୋଳା କଥାମାନ !

ଯହିଁ ଥାଅ ପ୍ରିୟ···ଯହିଁ ଯାଅ ପ୍ରିୟ !
ଥରେ ଯଦି ଆଣ ମନେ ମନେ,
ଅମର ସ୍ୱର୍ଗ ଲଭିବ ମୁଁ ପ୍ରିୟ !
ଲଭିବ ଧରାର ମରୁ-ପଥେ !

ଢେଙ୍କାନାଳ,

୯-୪-୧୯୪୮

—*—

## ॥ ରୂପ ସୌରଭ ॥

ଜୋଛନାରେ ଆଜି ଜୁଆର ଉଠିଛି
ଫୁଲ ଫୁଟି ଉଠେ କାନନେ,
ବିପୁଳ ସୁରଭି ଫାଟିପଡ଼େ ଗୁରୁ ଆନନେ !
ଅମଳ-ଧବଳ-କମଳର ସମ
ଅଧରେ ଅଧରେ ହାସ ମନୋରମ
ଗଣ୍ଡ-କପୋଳେ ଅଳପ ସରମ
କୋମଳ ଗଳପ ଆସନେ,
ଉଷା ଦେଖି ଦେଖି ରୂପର ଲକ୍ଷ୍ମୀ
ଅମଳ-କମଳ-ଲୋଚନେ !

ଧରଣୀର ବୁକେ ଯେ ଯେତେ ରସିକ
ଯେ ଯେତେ ସୁଭଗ ନାଗର,
ଆସରେ ବସରେ ପୀରତି-ବାସରେ
ସୁଅ ଛୁଟେ ଅନୁରାଗର !
ଦଖିଣର ସୁରେ କୋକିଳର ଗାନ
ଲକ୍ଷ କୁସୁମ ଫୁଟେ ନଶିଦନ .
ଚଞ୍ଚଳ ଆକରେ ଫଗୁଣର ବନ
ପୀରତିର ଆଜ ଜାଗର,
ବଞ୍ଚଳ ଧାସରେ ଆସରେ ତରୁଣ
ସୁଅ ଛୁଟେ ଅନୁରାଗର !

ରୂପର ସାଗର ଉଦ୍‌ବେଳ ଆଜ
ଆସରେ ସୁଆନେ ପହଁର,
ମିତର ଶାସନେ ପଡ଼ନାରେ ବୃଥା ଶିହର !
କମିଏଜ ପାଇଁ ଯୌବନ-ପକ୍ଷୀ
ଦେଖାଦେଇ କ୍ଷଣେ ଯିବ ଅପସରି
ଆଉ ନ ଫେରିବ ବଂଶୀ ମାଧୁରୀ
ତୋଳ ଯମୁନାର ଲହରୀ,
ରୂପର ଜୁଆରେ ଆସରେ ସୁଆନେ ପହଁର !

ମରଣ ରାତରେ ବର୍ଷା ବାଦଲ
ବେଳୁଁ ବେଳ ଢାଙ୍କେ ଆକାଶ,
ଅଂଧାରେ ଖାଲି ଏତିକି ଆଲୋକ ବିକାଶ !
ମଥାପରୁଁ ଯେଉଁ ବେଳ ଗଲା ଥମି
ଫେରିବନି ଯେତେ ସୁମରିଲେ ବସି
ଜରାର କୁହୁକେ ଉଡ଼ିଯିବ ରୂପ
କର୍ପୂର ସମ ବିକାଶ,
ଜାଗରେ ଜାଗରେ ଖସିଯାଏ ବେଳ
ବେଳୁଁ ବେଳ ତୋ'ର
ଯଉବନ ହୁଏ ବିନାଶ !

—✱○✱—

ଢେଂକାନାଳ
୧୫-୪-୧୯୩୮

# ॥ ଅଗୌରବ ॥

କଂଠର ହାର କଲ ଯା'ରେ ହାୟ
ସେ ତ ବିପଦର ଗୁଂଜରନ
କୋଟି କଳଂକ ପସରା ଟେକିଲ
ଯା'ର ହୃଦୁ-ମନ ରଂଜନେ,
ଝଞ୍ଜା ରଜନୀର ବ୍ୟସ୍ତ ଆକାଶେ
ଆଶଂକା ଘେରା ପ୍ରଳୟ ବତାସେ
ନିଷ୍ଠୁରତା ମୁଁ ତୋଳିଦେଲି ହାତେ
ସାଥୀ ବୋଲି ଯା'ରେ ନିର୍ଜନେ,
ତରୁଣ-ପଥିକ ହୃଦୟ-ଦରବେ ଘର୍ଷଣେ !

ଝଂଜା-ଅଙ୍କୁର ଟିଂଚେଳ-ମେଘେ
ଉଡ଼ିଲୁଁ ଧ୍ୱଂସ ବହ୍ନିପଥ,
ଯୁଗ୍ମ-ଯାତ୍ରୀ ମଂଗଳେ ହେଲ
ସୃଜନର ବେଣୁ ମନ୍ଦ୍ରିତ !
କାଳ-ଚକମାର ଝଂକ୍ଷଣ ସେ ଧାରେ
ଦେଖାଦେଲ ଗୁରୁ ସ୍ୱର୍ଣ୍ଣ-ରେଖାରେ
ନବୀନ ଚେତନ ମଂଜୁଳ ଢଂଗେ —
ଗାଇ ଚରଣପୁ ଧରୀତ,
ଗୋଲାପ ଟଗର ମୁଗ୍ଧ-ଚେତନେ
ମନ୍ମଥ ଅନୁବନ୍ଧିତ !

କୋଟି ରୂପବଶୀ ନଂଦିତ ତନୁ
କୋଟି ଅପ୍ସରୀ ନଂଦିତ,
ନନ୍ଦନ-ଆକ୍ଷି କରୁଣାରେ କୋଟି
ଅପର୍ଜିତ୍ବାଏ ଗଂଜିତ !
ନେଇ ମଧୁର ହାସେ ଲକ୍ଷ-କଟାକ୍ଷ ଝୁମ୍ରମରେ
ରଂଗ ଅଧରେ ବ୍ୟାକୁଳ ଗୋଲାପ ଝଂଚେଳେ
ଶ୍ୟାମ-ତନୁଶ୍ରୀ ଉଜ୍ଜଳ ଗରେ
ଉଚ୍ଛଳନ୍ତ ମୂର୍ତ୍ତି ତନୁଭଙ୍ଗେ —
ପରମ-ପ୍ରଣୟ-ସ୍ପନ୍ଦିତ,
ଧରି ଅନୁରାଗୁଁ କେଉଁ ଗୌରବେ
ବଂଚିତ କର ବଂଚନା ?

ଛଂଦେ ଛଂଦେ ନଂଦିତ ଧରା
ବର୍ତ୍ତୁଳ ରାସର ଗୌରବେ,
ତମ ବିନା ମମ ମରଣୋତ୍ସବ •
ଗରଜ ଆସଇ ଭୈରବେ !
କୁଂଜ କୁଟୀରେ କୁଂଦ କୁସୁମ ଗୁଂଜିତ
ବିଲବିଣପାଠ ଶୁଭ୍ର-ଚଂଦ୍ରିକା-ରଂଜିତ
ସ୍ନିଗ୍ଧ ସୁରଭି ପୁଲ୍ଲ ଗଗନେ ପୁଂଜିତ···
ଏମନ ଲଗନେ ମରିବାକୁ ମୁଁ ଗୋ ଭଲପାଏ,
ଚଲ ସପନର ରାସ-ରକ୍ତିମ ଗୌରବେ
କାରଣ ପଥିକ ଭୁଲିଯାଏଁ···
ତେବେ ଭୁଲିଯାଏଁ !!

—✻○✻—

ଢେଂକାନାଳ
୭-୧୦-୧୯୪୯

## ॥ ଉଡ଼ିଯିବା ॥

ଅତି ଜାଳ ଶୀତ କାଳ ଫାଲ୍‌ଗୁନ ଆସିଲା
ବୃହଁ ସଖି, ତାରୁଣ୍ୟ-ଶୋଭା ପରକାଶିଲା,
ନଗିନ ଏ ଗିରବନ···
ଫୁଲେ ଫୁଲେ ସୁଶୋଭନ
ରଙ୍ଗୋବଣ ଏ ଧରଣୀ ଫଗୁହାସ ହସିଲା,
ଫାଲ୍‌ଗୁନ ଆସିଲା ··· ଫାଲ୍‌ଗୁନ ଆସିଲା !

ନୀଳମ ଗଗନ ଛଟନେ ମୁକୁଳଇ ନୟନ
ଗୋଲାପ ପରାଗ ରଙ୍ଗେ ରକ୍ତିମ ଅଞ୍ଜନ
ଗୋପନେ ଗୋପନେ କୋଟି ମିଳନର ଧନେ
ଅଦ୍ଭୁତେ ସଙ୍ଗୀତର ବନ୍ଧେ,
ତେଜିଆସ କ୍ଷୁଦ୍ର ଏ ବନ୍ଧେ !

କୁସୁମ କୁସୁମେ ତବ କାଂତର ବିଳାଶ
ମୃଦୁଗନ୍ଧେ ବନଭୂଇଁ···ଥରଉଠେ ଆକାଶ
ଲଜ୍ଜିତ ମଳୟେ ଭ୍ରମର ଚରକାଶ···
ଘଟେ ତବ ତନୁବାସ ସଜନ,
ମୁଗ୍ଧ ଏ ତାରାଭରା-ରଜନୀ !

ଏମନ ରଜନୀ ଧାରେ ଆୟ ସଖି, ଆୟ ନଲୋ
ନିଶୀଥ ପିଆଲା ପାନେ ଭୁଲଇବା ଆଣ ନଲୋ
ନିର୍ଝର ଝରଝର···ଚଂନ୍ଦ୍ରିକା ଥରଥର
ବାୟୁବେଗେ ମର୍ମର
ସଚରେ ଲଳନେ,
ମଧୁ-ସ୍ୱାଦ ଚାଖ ସଖି ! ଆନନ୍ଦେ !

ପୂର୍ଣ୍ଣ ଏ ଧରା ଆଜି ଚଂନ୍ଦ୍ରିକା-ଚକିତ
ବିଧୁର ଚକୋର ଡାକେ ତନୁ ଉଚ୍ଚକିତ···
ଥକିତ ଥକିତ ମୃତ ମଦନ-ପୁଲକିତ
ଶଂକିତ ଅଭିସାର ଛଂଦେ,
ଚଞ୍ଚଳ ପ୍ରସ୍ଫୁଟ ମଂନ୍ଦେ !

ଯେନ ଜଗତେ ଯତନେ ଛପିଛପି ଆସ ଗୋ
ଫୁଲ-ଝଡ଼-ଅପୂନେ ଚହଟାଇ ବାସ ଗୋ···
କେହ୍ନ ନ ଜାଣିବେ ଆମ ଏ ଗୋପନ ବାସ ଲୋ
ନିଭୃତ ଅଂତର ତୃଷ୍ଣା,···
ଆସ ଗୌରାଂଗି ! ଆସ କୃଷ୍ଣା !!

ତରଳ ନୟନେ କର ଆଉରି କରୁଣ ଗୋ
ମୁଗ୍ଧା ଅପରାଜିତା ମାଳମାଟରେ ଜିଣ ଗୋ
ଅରୁଣ ଚରଣେ ଚୂର ତରୁଣ କିରଣ ଗୋ
ସ୍ନିଗ୍ଧ କବରୀ ଲୋଳ ଚରମେ,
ବ୍ୟାକୁଳ ବିକଳ କର ମରମେ ।

ମୁଗ୍ଧ ମୂରତି ରୂହିଁ ମୂଦେ ମୁଁ ଗୋ ମଣିବ
ନିଖିଳର ସୁଂଦର ଶିବ ଅନୁସରିବ···
ସତ୍ୟ ନ ହେଉ ପଛେ ମିଥ୍ୟା ମୁଁ ବରିବ
ପରମ ସତ୍ୟ ମୋ' ତାହା ଗୋ,
ଆସ ପୁଷ୍ପିତା ! ଉଡ଼ ବାହା ଗୋ !

ନିବଜ୍ଜସା-ବ୍ୟସ୍ତ ଧର ନୁହେଁ ଆମ ଲାଗି ଗୋ
ଶୂନ୍ୟ ମାଳଚେ ଯିବା ଥାନ ଟିକେ ମାଗି ଗୋ
ଅରୁଣିତ ଅୟନ···ଫୁଟାଫୁଲ ଶୟନ··· .
ନୟନ ଭରା ପ୍ରୀତି ଧାରେ ଗୋ,
ଆସ ସଖି ସେଇ ଅଭିସାରେ ଗୋ !

ଯକ୍ଷଯୁଗଳ ସମ ମୁଦେ ଆମେ ଉଡ଼ିବା
ତାରାଭରା ଅଇଅନେ ଭୂଜେ ଭୂଜ ଭିଡ଼ିବା
ମଂଦାକିନୀର ରେଣୁ-ଶେଯେ ସୁଖେ ଚଢ଼ିବା
ଉଡ଼ିଯିବା ତେଜି ଏଇ ଧରଣୀ,
ଶୀର୍ଣ୍ଣ ଏ ଜରା ଝରା ସରଣୀ !

ନଂଦନ ବନଷଣ୍ଡରେ ଆମେ ଗୋ ପହଁରିବା
ବଂଦନ ଚଂଦନେ ବିଂଦୁ ସଜାଡ଼ିବା
ଛଂଦେ ଛଂଦେ ମୃଦୁ-ବଂଧେ ବିହରିବା
ଫୁଲ ଅଭିଷେକ ହେବା ସଜନ,
ଅମର ହେବ ଏ ଫୁଲ-ରଜନୀ !

ନଖିଳ-ପୀରନ୍ତ-ରନ୍ତ ନ ପାହିବ ଆଜ୍ଞ ଗୋ
ଈର୍ଷା-କୁସୁମ-କଣ୍ଟ ନ ମାଧିବ ଦାନ୍ତ ରେ
ଅଳସ ଅବଶେ ଭୁଜଁ ନ ଫିଟିବ ବାହୁ ଟୋ
ସଦା ସବୁଜର ମଧୁଶଯ୍ୟା !
ଆସ ସଖି, ବସରାଇ ଲଜ୍ଜା !!

ନ୍ନୋଶ୍ୱର ମେଘଢେଉ ହାଲ୍କା ଏ ଆକାଶେ
କୋମଳ-ବକୁଳ-ବାସ-ଗୁଂଫିତ-ବତାସେ
ପଦ୍ମେମଳ ହୃଦ ମିଶି···ପାଗଳ କରିବା ନଶି
ହସିହସି ଉଜ୍ଜ୍ୱଳ ହେବ ଆମ ସକାଶେ,
ହାଲ୍କା ଏ ଆକାଶେ···
ତବ ମୋହ ବକାଶେ !

ସେ କେଉଁ ଦ୍ୱାପର ଯୁଗ ଯମୁନା ପୁଳିନେ ଗୋ
ତମେ ଥିଲ ରାଧା ସଖି, କୃଷ୍ଣ ମୁଁ ବନେ ଗୋ,
ମଦନ ମୁଁ···ରତି ତମେ ; ଯୁଗେଯୁଗେ ବନ୍ଧନ !
ଖୋଲ ସଖି ଖୋଲଖୋଲ ନନ୍ଦନ,
କରନାଥ ଏ ଯେ ଫୁଲ-ସ୍ପନ୍ଦନ !

ଯୁଗେଯୁଗେ ବନ୍ଧନ···ଯୁଗେଯୁଗେ ବାଧ ଗୋ
ଭୁଲିଯାଅ ଫସାର···ଭୁଲିଯାଅ ବାସ ଗୋ
ନିଖିଳ ପୀରତି ଗାଏଁ ଆମରି ନିବାସ ଗୋ
ଖୋଲ ସଖି, ଖୋଲ ଖୋଲ ପକ୍ଷ,
ଉଡ଼ିଯାନ୍ତି ଦଂପତି-ପକ୍ଷ !!!

—※O※—

ଢେଙ୍କାନାଳ
୧୯-୧-୧୯୫୭

## ॥ ପୁନଃ ସଂଭାଷଣ ॥

ବନ୍ଧୁବନ୍ଧୁ · ଭୁଲିଥିଲ ତମରେ ଗୋ ସଖି,
ଆଜି ପୁଣି ଆସେ ଯେବେ ପୂର୍ବସ୍ମୃତି ରଖି,
ଭାବିଛି ଦୁରୁଦୁରୁ ବୁକୁ· · ·ଶଂକିତ ନୟନ,
ଚରଣ ବେପଥୁ ଭରା· · ·ପ୍ରାଣ ଛନଛନ· · ·
ବ୍ୟାକୁଳ ଆବେଗ ହୃଦେ ଧରେ ତମ ଲାଗି,
କିଏ ଜାଣେ, ହେ କଲ୍ୟାଣି, ଚିର ଅନୁରାଗି !
କି ରୂପେ କରିବ ମୋ'ରେ ଆଦ୍ୟ-ସମ୍ଭାଷଣ
କି ରୂପେ ଦେଖିବ ମୋ'ର ଅବହେଳା ପଣ ?

କବା ହେଲ, କିଁପା ହେଲ, ଭୁଲିଲି କପରେ
ହେ ମଧୁ-ମଂଜୁଳ-ମୂର୍ତ୍ତି ! କାନନ-କୁରଙ୍ଗ !
କଦଂବ-କୋରକ-ଗୁଂଜା ଦେଇ କୃଷ୍ଣ-ଗନ୍ଧା,
ବଂବାଧର ଠାକେ ଯାର ଅଫୁଟ ମନ୍ଥରା—
ସିଂହାସନ; ସେ ନଂଦନ-ବାସିନୀ ସଙ୍ଗିନୀ !
ସଖିରେ, ଆସିଛି ଆଜି କଥା କହ ଦିନି !!

—*—

ବ୍ର· ପୁର
୨୩-୭-୧୯୫୦

## ॥ ଶେଷଗାନ ॥

ମୃଦୁ-କଂପନେ ମୃତ୍ୟୁ ଆସନା ଧରାରେ,
ପ୍ରାଣେ ନାଚଉଠେ ଯୌବନ-ଅପ୍ସରାଟିର !
ଚରଣ ଛଂଦୁଁ ନିଭିନାହିଁ ତାନ
ନୂପୁରୁଁ ଏବେ ହରଣିତ ଗାନ
ଏବେ ବାଜି ଅଛି କୁସୁମ ସ୍ୱପନ
ବକୁଳେ ମୁକୁଳ ଭରାରେ,
ମଧୁ-ଯୌବନେ ନ ଡେଜିବ କେବେ ଧରା ଦେଇ !

କିଏ କୁସୁମେ ଭରା ବସନ୍ତ
ଅଂଗନେ ଆସେ ମମ ଗୋ,
ଏକୁଁ ବନ ଆର ସୁଂଦର ମନୋରମ ଗୋ !
ରକ୍ତଗୋଲାପ ଓଠ ଛଳଛଳେ
ରଜନୀଗଂଧା ଅଞ୍ଜମାନ କରେ
ବକୁଳ କେତକୀ ଗଂଧ ବତରେ
ମଂଦାର ଛମଛମ ଗୋ,
କା'ରେ ତେଜ କା'ରେ ତୋଳନେବ ବୁକେ ମମ ଗୋ !

ଶୁକ୍ଳା ନବମୀ ଅର୍ଧନଶୀଥ
ଜ୍ୟୋତ୍ସ୍ନା-ବଧୁର ବନ ଗୋ !
କବରୀଗଂଧେ ପୁଲକିତ ଫୁଲ-ମନ ଗୋ !
ଥମିଥମି ଆସେ କ୍ଳାଂତ ଅନିଲ
କୁହରେ କଦବା ଶ୍ରାଂତ କୋକିଲ
ଫୁଲ-ତନୁ ଲେଭେ ଅଂଗ ଅଧୀର,
ସୁଂଦର ଅନୁପମ ଗୋ —
କୋଟି ଅପ୍ସରା ନାଚେ ଚୌଦ୍ଦିକେ ମମ ଗୋ !

ଫୋଟି ଫୋଟି ଫୁଲେ ସଜ୍ଜିତା ସଖୀ
ନିତ୍ୟ ଏ ଧନ୍ୟ ଧରଣୀ,
କେମନ୍ତେ ତେଜବ ଏସନ ମଧୁର ଧରଣୀ ?
ରୁଷ୍ଟ ରୁଦ୍ର ଚିର ଅଶାଂତ !
ତବ ନିଃଶ୍ୱାସେ ପିଷ୍ଟ ପାଂଥ;
କାଳବୈଶାଖି ! ଶ୍ୟାମଳ ଶାଂତ—
ରୂପବତେ ମୋ'ର ଜନନୀ,
ମରମ, ଫେରନ୍ତେ ! ନ ତେଜବ ଫୁଲ—
ମଂଜୁରିତା ଧନ୍ୟ ଧରଣୀ !!

କଟକ
୧୯-୮-୧୯୪୯



"କବି ଶ୍ରୀ ଶ୍ରୀଚନ୍ଦ୍ର ନାୟକଙ୍କର ଦଶବର୍ଷ
ପୂର୍ବର ଏଇ ରଚନାବଳୀ ଓଡ଼ିଆ
ସାହିତ୍ୟର ରୋମାଣ୍ଟିକ ଯୁଗର ଏକ
ଅଳାଭ୍ ସ୍ୱାକ୍ଷର ବହନ କରନ୍ତି, ଓ
ତାଙ୍କର ପରବର୍ତ୍ତୀ ପଦକ୍ଷେପ ପ୍ରତି
ଉତ୍କଣ୍ଠା ଜଗାଇଛନ୍ତି ।
ଶୀତଳ ଓ କୋମଳ, ଫୁଲ
ମନର ଏଇ ମୃଦୁ ଓ ମଧୁର ।"